ପ୍ରଥମ ପ୍ରକାଶ

ଡିସେମ୍ବର, ୧୯୭୮

ପ୍ରକାଶକ

ଶ୍ରୀ ପୀତାମ୍ବର ମିଶ୍ର

ବିଦ୍ୟାପୁରୀ

ବାଲୁବଜାର, କଟକ ୭୫୩୦୦୨

ପ୍ରଚ୍ଛଦ ଚିତ୍ର-

ଶିଳ୍ପରୂପମ୍, କଟକ

ମୁଦ୍ରକ

ଶ୍ରୀ ଦିବାକର ମିଶ୍ର

ଗୋସ୍ୱାମୀ ପ୍ରେସ

ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ ଟ ୮·୦୦

# ସୂଚୀ

ବିଷୟ | | ପୃଷ୍ଠା

## ।। ଆହେ ନୀଳ ଶଇଳ ।।

ବୁଡ଼ି ଯାଉଥିବା ଛୋଟା ସମୁଦ୍ର
ହାତ ଟେକିଦେଲା ଉପରକୁ ଅକସ୍ମାତ୍
ପାପୁଲିରେ ତାର ନିର୍ବୋଧ କଅଁଳା ଶିଶୁଟିଏ
ବଡ଼ ବଡ଼ ଆଖିରେ ମିଟି ମିଟି ଚାହୁଁଛି
କଣ ସେ ବୁଝେ କଣ ସେ ଜାଣେ
ହାତ ନାହିଁ କି ଗୋଡ଼ ନାହିଁ
ଚାଲିବାର ବି ଶକ୍ତି ନାହିଁ ।

ଆହା ଆହା ମା-ଛେଉଣ୍ଡ ଅନାଥ ଶିଶୁ !
କେତେବେଳେ ତାକୁ ଷଠୀବୁଢ଼ୀ
ହସାଉଥାଏ ତ ହସାଉଥାଏ
କନ୍ଦାଉଥାଏ ତ କନ୍ଦାଉଥାଏ
ସେ କଣ ଜାଣେ
ଉବୁଟୁବୁ ସମୁଦ୍ର ବିଚରା
ବଂଚାଇ ରଖିଚି ତାକୁ କେଡ଼େ ଦୁଃଖରେ ।

ଅଜବ ଏଇ ଲଙ୍ଗୁଳିଟାକୁ
ଦେଖିବା ପାଇଁ ଏତିକି ଭିଡ଼ !
ସବୁରି ମୁହେଁ ହସର ଗାର
ଆଖିରେ କାର ଦି ଟୋପା ଲୁହ
ବୋକା ଶିଶୁଟା ବୁଝେନି କିଛି
ଡବ ଡବ ଆଖିରେ ଚାହୁଁଥାଏ ତ ଚାହୁଁଥାଏ ।

## ॥ ଭଂଗା ମଂନ୍ଦିର ॥

କେଉଁ ଦୁଃଖରେ ପୁଣି
ଭାଂଗି ପଡ଼ିଲା
ପରିତ୍ୟକ୍ତ ମନ୍ଦିରଟିର ହଜାରେ ବର୍ଷର ସାହସ ?

ନିର୍ଜନ ବଣ କାନ୍ତାର
ଧରି ରଖି ପାରିଲା ନାହିଁ
ମଂନ୍ଦିର ଦେହେ ଯାତ୍ରୀଙ୍କର
ଅଙ୍ଗାର-ଲେଖା ହସ୍ତାକ୍ଷର କିମ୍ବା ଇତିହାସ ।

ଅମୁହାଁ ସେ ମନ୍ଦିରରେ
ଆଖିକାନ ବଂଦ କରି
ଆଁ କରି ଶୋଇ ଯାଇଚି
ଛିଣ୍ଡା ମଇଳା ମାଦଳା ପାଞ୍ଜିର ଅଲେଖା ପୃଷ୍ଠାମାନ
ରହି ରହି ଝରି ପଡ଼ୁଚି
ବାଲି ଆଉ ପଥର ଗୁଂଡ, ଚୂନ ।

ପବନ ନାଇଁ
କିଏ ଲେଖୁଚି ?
କିଏ ପୁଣି ବାରଂବାର ପୃଷ୍ଠା ଓଲଟାଏ ?

ମନ୍ଦିର କାନ୍ଥେ
ଠକ୍ ଠକ୍ କରି ପଗୁରୁଚି
ପୁରାତନ ଶାଳ ଗଛର ଝରାପତ୍ର
କିଏ ? କିଏ ?
କିଏ ଚେଇଁ ରହିଚ ଏ ନିଶା ରାତିରେ
ଶୋଇପଡ଼ । ଶୋଇପଡ଼ ।

# ॥ ତୀର୍ଥଯାତ୍ରୀ ॥

ସେଦିନ ରାସ୍ତାରେ ଭେଟି
ଧୂଳିଖେଳେ ମାତିଥିବା ଶିଶୁଟିକୁ ପଚାରିଲି
କେମିତି ଅଛୁରେ ?
'ସେ ରହିଲା ଚୁପ୍‌ଚାପ୍
ନ ଚାହିଁଲା ମୁହଁଟେକି
କାରଣ ତମକୁ ଜଣା ପ୍ରଶ୍ନର ଉତ୍ତର ।

ସେ କେତେ ସମୟ ବୋଧେ
ଭୁଲି ଯାଇଥିଲା
ତୁମେ ଜଣେ ତୀର୍ଥଯାତ୍ରୀ
ଜନ୍ମଠାରୁ ବନ୍ୟାପରି ବଢ଼ୁଥିବା ଅଧିକାର
ମମତ୍ୱ ବୋଧର
ଶେଷ ହୋଇ ଯାଇଅଛି
ନଦୀଗର୍ଭ ବାଲୁକା ଦିଶୁଛି ।

ଶେଷଥର ଫଳସବୁ ଝଡ଼ିଯିବା ପରେ
ଅଭିମାନୀ ଗଛଟିଏ ପରି ତମେ
ଆଖି ଛଳ ଛଳ କରି କାହା ଅପେକ୍ଷାରେ
ତୁମକୁ ଥରାଇ ଦେଇ ବାରଂବାର
ଜୁଲୁ ଜୁଲୁ ଚାହୁଁଥିବା-ଲୋକଭର୍ତ୍ତି
ଟ୍ରେନ୍ ଚାଲିଯାଏ ।

ଗାଆଁର ଠାକୁରଘର ନଈନାଳ ବିଲବଣ
ସେ ସବୁ କେତେ ଯେ ଦୂରେ
ଜଳୁଥିବେ ଦିପହର ଝାଂକିରେ ଉଦାସ
ଛଟପଟ ହେଉଥିବ ଶଗଡ଼ଗୁଳା ରାସ୍ତାରେ
ଗାଆଁଟିର ଦୀର୍ଘ ଇତିହାସ ।

॥ ଜନ୍ମ ତାରିଖ ॥

୧୮୫୭ ଜୁଲାଇ ସାତ ତାରିଖ
୧୮୫୭ ଜୁଲାଇ ସାତ ତାରିଖ
ସ୍ମରଣ କରାଇ ଦିଏ ଜନ୍ମ ତାରିଖକୁ ମୋର
ବର୍ଷକରେ ଥରଟିଏ ଆସୁଥିବା
ପ୍ରତିଶୋଧ ପରାୟଣା ପ୍ରେମିକାର ଚିଠି;

ରାସ୍ତାଦାଢ଼ ସବୁଜ ପତ୍ରର ଚିତ୍ର
ଶଗଡ଼ର ଧୂଳି ଜମି କ୍ରମଶଃ ବିକୃତ ହୁଏ
ବୁଝି ହୁଏ ନାହିଁ;

ବୟସଟା ଦୁଷ୍ଟ ଶିଶୁପରି
ଯେତେ ଆଗୁଳିବା ସତ୍ତ୍ୱେ
ହାତ କିମ୍ବା ଗୋଡ଼ ଫାଙ୍କେ ଲାଗିପଡ଼ି
ରାସ୍ତା ଖୋଜୁଥାଏ
ସେ ନିଶ୍ଚୟ ଗ୍ଳିଯିବ ବାହାରକୁ
ଜନ୍ମ ତାରିଖରେ ।

ଆଜି ପାଇଁ ଚିଠିବଣ୍ଟା ସରିଗଲା ଡାକବାଲାଟିର
କାଲି ପୁଣି ସେ ଆସିବ ନୂଆ ଚିଠି ନେଇ
ସଂବର୍ଦ୍ଧନା ଜଣାଇବି ଦୌଡ଼ିଯାଇ ଗେଟ୍‌ଯାଏଁ
ଏକ ନିଶ୍ୱାସରେ;

ଆଗେ ଆଗେ ଗ୍ଳୁଥିବ ଛାଇ ମୋର
ଆଶ୍ୱାସନା ଦେବ ମୋତେ ଗତ ବର୍ଷ ପରି
ଠିକ୍ ଅଛ,
ଟିକେ ବି ବଦଳି ନାହିଁ ତମ ଚେହେରା।

## ॥ ଡ୍ରାଇଭର ॥

ଗାଡ଼ିର ଦର୍ପିତ ଛାଇ
ସ୍ଥାବର ଗଛମାନଙ୍କୁ ଚୁପ୍ ଗୁପ୍ କରିଦିଏ ଆଙ୍ଗୁଠି ଦେଖାଇ
ସବୁବେଳେ ଦୌଡ଼ିବାକୁ ଇଚ୍ଛା କରୁଥିବା ରାସ୍ତା
ବହୁଦୂରେ ପଡ଼ିରହେ ଦୌଡ଼ି ପାରେନାହିଁ ।

'ଛାମୁଛାଡ଼ ! ଛାମୁଛାଡ଼ ! ଡାକଶୁଣି
ଛିଟିକି ପଡ଼ିବୀ ଲୋକେ
ପ୍ରତାପୀ ଓ ଭାଗ୍ୟବାନ୍ ଡ୍ରାଇଭରଙ୍କୁ ଚାହାନ୍ତି
ଭୟ ସଂଭ୍ରମରେ ।

ଯେତେବେଳେ ପୋର୍ଟିକୋ ତଳରେ ଗାଡ଼ି
ବସିରହେ ଉଦ୍ଧତ ଭଂଗୀରେ
ଡ୍ରାଇଭର-କପାଳରେ ଶିରାମାନେ ଗଣୁଥାନ୍ତି
ଶେଷଦିନ କେବେ ହେବ କୈଳ୍ମିଆଦର,
ସେ ଛୁଟିବ ପୂର୍ବପରି
ଗାଡ଼ିକୁ ଛୁଟାଇ ନେବ
ଅପେକ୍ଷା ଅପେକ୍ଷା ମାତ୍ର ପ୍ରଭୁଙ୍କ ଆଦେଶ ।

ଷ୍ଟିଅରିଂରେ ମଥା ଦେଇ ବସିଥାଏ ଡ୍ରାଇଭର
ଚାହୁଁଥାଏ ବାରଂବାର ଘର ଭିତରକୁ
ଗଛରୁ ପତ୍ର ପଡ଼ିଲେ ଜଣାଯାଏ
ବାହାରକୁ ଆସୁଥିବା ଜୋତା ଶବ୍ଦ ପରି,
ବାଟଚଲା ଲୋକଙ୍କର ପରିହାସେ ଭୟ କରି
ମୁଣ୍ଡ ପୋତି ହୁଂକା ସେ ପାଲଟି ଯାଏ
ଯଦିଚ ତାହାର ନାହିଁ ଅଭିଳାଷ
ଅଭିନୟେ ବାଲ୍ମୀକି ହେବାର ॥

## ॥ ରିହର୍ସାଲ ॥

ମୋର କଣ ରିହର୍ସାଲ ଲୋଡ଼ା ହେ ନିର୍ଦ୍ଦେଶକ .
ତୁମେ କଣ ଦେଖି ନାହଁ ଦୁଃଶାସନ ଭୂମିକାରେ
ଘଣ୍ଟା ଘଣ୍ଟା ଧରି ମୋର ମୁଖଭଂଗୀ
ଟିକେ ନ ବଦଳେ
କ୍ଳାନ୍ତି ଅବା ବିରକ୍ତିରେ
ଯେତେବେଳେ ଦ୍ରୌପଦୀର ଶାଢ଼ୀ ନାହିଁ ଖୋଲେ ।

ଅବଶ୍ୟ ମୁଁ ଜାଣିଥାଏ
ବାରଂବାର ଶିଶୁ ମୁଷ୍ଟି ଆଘାତରେ
ପ୍ରତିକ୍ରିୟା କିଛି ହେବ ନାହିଁ
ପ୍ରତ୍ୟଂଗର ସଂଚାଳନ
ଯେତିକି ବା କୁହା ଯାଇପାରେ
ସେପରି ତ ଶଗଡ଼ଗୁଳା ନିର୍ଦ୍ଦେଶ ଦିଆଯାଇଥାଏ ।

ଅଭିନୟେ ମୋର କାହିଁ ବାହାଦୂରୀ ତୁମର ବା
ଘାଟ ପାରି କରିବା ତ ତୁମ କାମ
ଉଦାସୀନ ନାଉରୀଟି ପରି
ହିସାବ ଦର୍କାର ନାଇଁ
କିଏ ଗଲା କିଏ ବା ଆସିଲା
କାହାକୁ ଅଜଣା ଅଛି
ଡଙ୍ଗାରେ ଚଢ଼ିବା ଏବଂ ଓହ୍ଲାଇବା ରୀତି
କେହି କେବେ ଭାବନ୍ତି କି
ତୁମର ଭୂମିକା କଣ ଅଥବା ସେ
ଡଂଗାର ଭୂମିକା

ଡଂଗା ନେବା ଏ କୂଳରୁ ସେ କୂଳକୁ
ସେ କୂଳରୁ ଏ କୂଳକୁ
ଏଇ ତ ଜୀବିକା ।

ବିନା ରିହର୍ସାଲେ ମୋତେ ମଞ୍ଚକୁ ଓହ୍ଲାଇ ଦିଅ
ଦେଖିବ କିପରି
ବଚନିକା ଉଚ୍ଚାରଣ, ଶାଣଦିଆ ଆଖି
କ୍ଲାନ୍ତିହୀନ ବାଲିପରେ ନଦୀର ପ୍ରଥମବାର
ଗ୍ଲିପରି ବେଖାତିର ଗ୍ଲି ।

## ॥ ମୃତ ଟେଲିଫୋନ୍ ॥

ମୃତ ଟେଲିଫୋନ୍ ଦେହରେ ଜମିଥିବା ଧୂଳିର ଆସ୍ତରଣ
ମୋ ଆଙ୍ଗୁଠି ଛାପରେ ସ୍ପଷ୍ଟ ହୋଇ ଉଠିଲା ।
ହଠାତ୍ ମୁଁ ଭୟରେ ଶିହରି ଉଠିଲି ।
ଇସ୍, ଆତତାୟୀର ରକ୍ତାକ୍ତ ଛୁରାରେ
ମୋ ଆଙ୍ଗୁଠିର ଚିହ୍ନ ।

ମୁଁ କଣ ଜାଣି ନ ଥିଲି ଯେ
ଟେଲିଫୋନ୍‌ଟା ମୃତ ବୋଲି ?
ତଥାପି କାହିଁକି ଭାବିନେଲି ଯେ
ଟେଲିଫୋନ୍‌ରୁ ଶୁଭିବ
ପକ୍ଷୀର ଅସ୍ପଷ୍ଟ ଡାକ,
ଝରଣାର ସଂଯତ ପାଦ ଶବ୍ଦ ।

ଆଖିବୁଜି ପଛକୁ ଫେରି ଆସିଲାବେଳକୁ
ଭୂଇଁରେ ଲୋଟି ପଡ଼ିଲି କାହାର ପ୍ରଚଣ୍ଡ ଧକ୍‌କାରେ,
ପଛରେ ଠିଆ ହୋଇ
ବିଦ୍ରୂପରେ ଅଟ୍ଟହାସ୍ୟ କରୁଛି,
ଅହଙ୍କାରୀ ଦୁଃସମୟ ।

# .॥ ଦାସୀପୁତ୍ର ॥

ଦାସୀପୁତ୍ର ବୋଲି ମୋତେ ଘୃଣାରେ ଠେଲି ଦିଅନା ମହାରାଣି !
ମୋତେ ଥରେ ଛାତି ଉପରକୁ ଉଠେଇ ନିଅ
ମୋର କପାଳର ଝାଳବିନ୍ଦୁ ଥରେ ପୋଛି ଦିଅ
ପୋଛି ଦିଅ ।

ମୁଁ ତ ରାଜ୍ୟର ଅଧିକାର କେବେ ମାଗିନାହିଁ ମହାରାଣି !
ଅଥଚ ନିର୍ମମ ଆତତାୟୀର ସ୍ୱପ୍ନ ଦେଖି
ବାରମ୍ବାର ଚମକି ଉଠୁଛ କାହିଁକି ?

ମୋର ଜନ୍ମ ମୁହୂର୍ତ୍ତରେ ମୁଁ ଦେଖିଛି ପ୍ରଥମ ଦୃଶ୍ୟ
ହିଂସ୍ର ଦାନ୍ତ ଓ ନଖ ଦେଖାଇ ମାଡ଼ି ଆସିଛି
ବୀଭତ୍ସ ଅନ୍ଧକାର

ମୋର ଜନ୍ମ ମୁହୂର୍ତ୍ତରେ ମୁଁ ଶୁଣିଛି ପ୍ରଥମ ଶବ୍ଦ
ବିପଦସୂଚକ ସାଇରେନ୍‌ର ମୁମୂର୍ଷୁ ଚିତ୍‌କାର ।
ରାସ୍ତା ଦାଢ଼ର ପରିତ୍ୟକ୍ତ ଶିଶୁଟିଏ ପରି ମୁଁ କେତେ ଚିତ୍‌କାର କରିଛି
କେତେ ମୁଣ୍ଡ ପିଟିଛି ତମରି ପାଦତଳେ
ଯେମିତି ଏ କାତର କ୍ରନ୍ଦନର ଶେଷ ନାହିଁ ଅନାଦି କାଳ
ଅଥଚ ଆଖିରେ ତମର ଶାଣିତ ତରବାରୀ ପରି
ପ୍ରଚଣ୍ଡ ଘୃଣା ।

ବର୍ଷା ଛାଡ଼ିଗଲା ପରେ ପବନରେ ଯେମିତି ଝରି ପଡ଼ୁଛି
ଟପ୍ ଟପ୍ ପାଣି, କାହା ପାଇଁ ଅପେକ୍ଷା ନ ରଖି
ଦୁଇ ଆଖିରୁ ତମର ଝରି ପଡ଼ୁଛି ଉଦାସ-ଲୁହ,
ତମ୍ଭେ କଣ ସତରେ ଆଜି କାନ୍ଦୁଛ ମହାରାଣି ?

ଯୁଦ୍ଧରେ ସ୍ୱାମୀ, ପୁତ୍ର ଯେତେବେଳେ ନିହତ ହେଲେ
ତମେ ତ ସ୍ଥାଣୁ ପରି ଠିଆ ହୋଇଥିଲ,
ସମ୍ବେଦନା ଜଣାଇବାକୁ ଯାଇ ଦେଖିଲି
ଆଖିରେ ତମର ସେହିପରି ଶାଣିତ ତରବାରୀର ଘୃଣା ।

ପ୍ରତିଶୋଧର ଜ୍ୱାଳାରେ ମୁଁ ଦ୍ୱାରବନ୍ଦ କରି କେତେ କାନ୍ଦିଛି
ତମେ ଶୁଣିବାକୁ ଚେଷ୍ଟା କରିଛ କେବେ ?
ତମର ଚରମ ବିପଦରେ ମଧ୍ୟ ପୁତ୍ରବୋଲି ମୋତେ
ସମ୍ବୋଧନ କରିବା କଥା ଚିନ୍ତା କରିଛ କେବେ ?

ଦେଖ, ମୁଁ ଆଜି ପ୍ରତିଷ୍ଠା କରି ପାରିଛି ଦାସବଂଶ
ଏ ବିରାଟ ସାମ୍ରାଜ୍ୟର ମୁଁ ଏକଛତ୍ର ସମ୍ରାଟ୍
ତମେ ଥରେ ମୋର ହୃତ୍‌ପିଣ୍ଡରେ କାନଦେଇ ଶୁଣ
ସେଥିରେ ଅନୁରଣିତ ହେଉଛି ତମରି ଘୃଣା ଓ ହତାଦର
ମୋର ଅନାଗତ ମୃତ୍ୟୁର ବିଭୀଷିକା !

## ॥ ଅରଣ୍ୟର ରାସ୍ତା ॥

କେଉଁଠି ଅରଣ୍ୟ ହିଂସ୍ର
କେଉଁଠାରେ ଶାନ୍ତ ଓ ସ୍ୱାଧୀନ,
କେଉଁଠାରେ ପ୍ରତିରୋଧ
କେଉଁଠାରେ ମୃଦୁ ଆମନ୍ତ୍ରଣ,
ଛାଇ ଓ ଆଲୁଅ ଖେଳ,
ପୁନଶ୍ଚ ବିରୋଧ,
ଜ୍ୱାଳାମୟ ଆନନ୍ଦର ଅସ୍ପଷ୍ଟ ଅନ୍ଧାର ପୁଣି,
କେଉଁଠାରେ
ସୂର୍ଯ୍ୟ ତାର ଢାଳି ଦିଏ ସବୁ ଆଶିର୍ବାଦ,
ହଠାତ୍ ଏମିତି ସବୁ ମନେ ପଡ଼ୁଥିବା କଥା
କେତେବେଳେ ଭୁଲି ହୋଇଯିବ,
ବାରମ୍ବାର ପଛରେ ପକାଇ ମୋତେ
ଅରଣ୍ୟର ରାସ୍ତା ପୁଣି
ଆଗେ ଆଗେ ଗ୍ଭଲିଯାଉଥିବ ।

ଋତୁର ପ୍ରଥମ ଦିନ ପବନରେ
ଫୁଲ ଯେତେ ଫୁଟିବାର ସବୁ ଫୁଟି ଯାଏ,
ସମୁଦ୍ର ପ୍ରଥମ ଦିନ ଜୁଆରରେ
ହଜିଯିବା ଆନନ୍ଦରେ ଗୁଳ୍ମଲତା ସବୁ ଲୋଟିଯାଏ,
ଅକସ୍ମାତ୍ ସହର ଦେଖିଲାବେଳେ
ଶିଶୁର ଅବାକ୍ ଭାବ ମୁହଁ ଓ ଆଖିରେ
ପୁଣି କେବେ ଦୁଃଖର ପବିତ୍ର ମୂର୍ତ୍ତି
ସ୍ଥିର ଭାବ୍ରେ ଠିଆ ହୋଇ ରାସ୍ତାକୁ ଓଗାଳେ ।

ସକାଳ ଆସିବ ଏଠି ପୁନଶ୍ଚ ସକାଳ
ଶୁଭୁଥିବ କୋଳାହଳ ପୁଣି କୋଳାହଳ
ଲଣ୍ଡାଗଛ ଶେଷ ହଳଦିଆ ପତ୍ର
ରକ୍ତହୀନ ଚନ୍ଦ୍ର ଧୀରେ ଖସି ଆସୁଥିବ
ହଠାତ୍ ଏମିତି ସବୁ ମନେ ପଡ଼ୁଥିବା କଥା
କେତେବେଳେ ଭୁଲି ହୋଇଯିବ,
ବାରମ୍ବାର ପଛରେ ପକାଇ ମୋତେ
ଅରଣ୍ୟର ରାସ୍ତା ପୁଣି
ଆଗେ ଆଗେ ଚାଲି ଯାଉଥିବ ।।

## ॥ ଇତିହାସ ॥

ନିର୍ଲିପ୍ତ ମୋର ପାଦର ସମସ୍ତ ଶବ୍ଦ,
ପବନ ପରି ମୁଁ ନିଃସଙ୍ଗ ହେଲେ ବି
ନିଃସ୍ୱ ନୁହେଁ, କାରଣ
ମୋର ଅଭିମାନ ଶେଷ ହୋଇନାହିଁ ।

ମୁଁ ଇତିହାସ ଲେଖିବି,
ମୋ ପାଖରେ ଶବ୍ଦ ନାହିଁ
ମୁଁ ଶବ୍ଦ ସଂଗ୍ରହ କରୁଛି,
ମୁଁ ସ୍ଥିର କରି ନାହିଁ, କେଉଁମାନଙ୍କୁ
ଇତିହାସରେ ଜନ୍ମଦେବି, ପୁଣି
ହତ୍ୟା କରିବି କେଉଁମାନଙ୍କୁ
ଶେଷ ପୃଷ୍ଠାମାନଙ୍କରେ ॥

ଅସମ୍ଭବ ଇଚ୍ଛା ସବୁ ଫୁଲର ପାଖୁଡ଼ା ଭଳି
ମୋ ଆଗରେ ଝୁଲୁଚି ।
କେତେ ବେଶି ଦୃଢ଼ ମୋର ବିଶ୍ୱାସ,
ପୁଣି କେତେ ଲୋଭନୀୟ,
ମୁଁ କିନ୍ତୁ ପ୍ରତିଜ୍ଞା କରିଛି
କେବେ କାନ୍ଦିବି ନାହିଁ ।

ମୋ ତୂଳୀରୁ ସବୁ ରଙ୍ଗ ଶୁଖି ଯାଉଛି
ଆଉ ଗୋଟାଏ ଗାର ପକାଇବାକୁ ବି
ମୁଁ ଅସମର୍ଥ;
କିଏ ମୋତେ ଧକ୍କା ମାରି ବାରମ୍ବାର
ତଡ଼ି ଦେଉଛି, ସେ
ରାତ୍ରିର ବିନିଦ୍ର ପ୍ରହରୀ, ସେ
ହୃଦୟହୀନ ଈଶ୍ୱର ॥

## ॥ ଶକ୍ତିପୂଜା ॥

ମାଗୋ ମହାମାୟା ! କି ଭୀଷଣ ତୁମର ସଂହାର ମୂର୍ତ୍ତି
ଚାହିଁଦେଲା ମାତ୍ରେ ଯେ ମୋର ଚେତା ହଜି ଯାଉଛି
ମହିଷାସୁରର ମୃତ୍ୟୁର ବୀଭତ୍ସ ଅନ୍ଧକାର
କେତେ ଘନୀଭୂତ ହୋଇ ଯାଉଛି !
ମୋ ଛଡ଼ା ତ ଆହୁରି ଅନେକ ଲୋକ
ହାତ ଯୋଡ଼ି ବସିଛନ୍ତି ତମ ପାଦତଳେ
ସମସ୍ତଙ୍କର କଣ ସେଇ ଏକା ଭୟ ?

ତଥାପି ତ କାହାର ସାହସ ନାହିଁ
ପାଦତଳୁ ତମର କ୍ଷଣକ ପାଇଁ
ଉଠିଯିବା ଲାଗି
ଏଣେ ତେଣେ ଚାହିଁ ଅଳସ ଭାଙ୍ଗିବା ପାଇଁ
ଯେ ହଠାତ୍ ତୁମକୁ ଅମାନ୍ୟ କରି ବସିବ
ଦୁଃଖକୁ ତାର ପୁଣି ମୁଣ୍ଡରେ ବୋହି ଫେରିଯିବ
ସେ କଣ ହୋଇ ପାରିବ ମହିଷାସୁର ?

ସମସ୍ତେ ଜାଣନ୍ତି ଯେ ତୁମେ କାହାକୁ ହତ୍ୟା କରିବ ନାହିଁ
କରିପାରିବ ନାହିଁ
ତମରି ଶୂଳ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଅଟକି ରହିଯିବ ।
ମୁଁ କେତେ ପଛରେ, କେତେ ତଳେ ବସି ରହିଛି ସତେ !
ତମେ ଇଚ୍ଛାକଲେ
ମୋର ହାତ ଧରି ତମର ପାଦତଳ ପର୍ଯ୍ୟନ୍ତ
ଟାଣି ନେଇ ପାରନ୍ତ ନାହିଁ ?
ମୋର ମୁଣ୍ଡ ଆଉଁଷି ପିଠିରେ ଉଦୁଉଦୁମା କରିପାରନ୍ତ ନାହିଁ ?

ମୁଁ ଯଦି ଭୟ ନ କରି
ତମ ପାଦରେ ପାଦ ଛନ୍ଦି ରାସ୍ତା ଅଟକାଇ ଦେବି
ତମ ପଣତ କାନିରେ ନାକ ପୋଛି ଦେବି
ରକ୍ତଭରା ଖର୍ପରରେ ତମର ଫୁଲ ଫୁଟାଇ ପାରିବ ?
ମାଗୋ ମହାମାୟା !
ତୁମେ କ୍ଷମାଦେବ ନାହିଁ ମୁଁ ଜାଣେ
ତୁମେ କରୁଣା କରିବ ନାହିଁ ମୁଁ ଜାଣେ

ଆଉ କେତେ ଦିନ ?
କେତେ ଦିନ ଆଉ ତମର ଶୂଳ ପ୍ରହାରକୁ ଅପେକ୍ଷା କରି ବସି ରହିବି ?
ଅଥଚ ମୁଁ ଜାଣେ ଯେ ତୁମେ ନିର୍ଜୀବ
ତମେ ଶକ୍ତିହୀନ ।

## ।। ବାଘ ।।

ଡାଳ ସବୁ ନଇଁ ଆସେ ଘୁଞ୍ଚ ହୋଇ
ପୃଥିବୀର ଛାତି ଉପରକୁ
ଦିନସାରା ପଥଶ୍ରମ, ଅନେକ ଦୁଶ୍ଚିନ୍ତା
ବରଫର ମୁଣ୍ଡା ବାନ୍ଧେ
ବଢ଼ୁଥାଏ ରାତିର ଓଜନ ।

ନିର୍ଜନତା ଭାଙ୍ଗିଯାଏ
ଅରଣ୍ୟ ଚମକି ଉଠେ
ପହରା ବାଲାର ଅବା ଶୁଣିଥିବା ଶେଷଡାକ
ବାଘର ଗର୍ଜନ
ତା ପରେ ନିଶ୍ଚିନ୍ତ ବାଘ
ଶୋଇଯାଏ ଚୁପ୍‌ଚାପ୍
ମାଆ କୋଳେ ଦୁଷ୍ଟ ପିଲା ପରି ।

ଭୁଲିଯାଏ ସେତେବେଳେ ସେ ତାହାର ନିଜ ନାଆଁ
ମଣିଷ ଦେଇଛି ଯେଉଁ ନାଆଁ ଗୋଟି
ବାଧ୍ୟ କରି
ତାକୁ ନ ଜଣାଇ ।

ରାତିର ଓଜନ ହାତ
ମାଆ ହାତ ପରି ତାକୁ
ଚାପି ଧରେ
ସେ ଆଉ ଉଠିବ ନାହିଁ ସକାଳ ପର୍ଯ୍ୟନ୍ତ
ମଝିରେ ମଝିରେ ଖାଲି ଯାହାକିଛି
ନିଷ୍ଫଳ କାନ୍ଦଣା ତାର
ନିଦ ବାଉଳାରେ;
ହୋଇପାରେ, ନାଆଁ ତା'ର ଏତେବେଳେ
ଠେକୁଆ, ପାରା, ବାଛୁରୀ ଅଥବା ଗୁଣ୍ଡୁଚି ।

## ।। ଚଷମା ।।

ଡଙ୍ଗାରେ ନଇ ପାର ହେଲାବେଳେ
ତମେ ଦୁଷ୍ଟାମି କରି ମୋତେ ଓଦା କରିଦେବ ବୋଲି
ଆଞ୍ଜୁଳାଏ ପାଣି ଆଣିବାକୁ ହାତ ବଢାଇଲ
ସୁନାମୁଦିଟି ତମର ପଡ଼ିଗଲା ନଇରେ ;
ମୋତେ ଠିକ୍ ପରାଜିତ କରିବା ମୁହୂର୍ତ୍ତରେ ତମେ ହାରିଗଲ
କେଡ଼େ କରୁଣ ଚାହାଁଣି ତମର !
ମୁଁ ତମକୁ ହଠାତ୍ ଦୟା କଲି,
'ଦୁଃଖ କଣ ? ହଜିଗଲା ସାମାନ୍ୟ ମୁଦିଟେ !'

ରାସ୍ତାରେ ଫେରିଲା ବେଳେ
ଶଗଡ଼ଦଣ୍ଡାରୁ ଧୂଳି ଉଡ଼ିଆସି
ତମ ଆଖିରେ ପଡ଼ିଗଲା
ତମେ ଆଖି ଛଳ ଛଳ କରି ମୋତେ ପଛରୁ ଡାକିଲ
'ଟିକିଏ ଶୁଣିଲ, କେତେ କଦର୍ଯ୍ୟ ରାସ୍ତା ମ ଏଇଟା ।'
ମୁଁ ତମକୁ ପୁଣି ଦୟା କଲି,
ମୋର କଳା ଚଷମାଟି ପିନ୍ଧି ତମେ କେତେ ଦୁଷ୍ଟ ଭଙ୍ଗୀରେ ଚାହିଁଲ,
ଅନିଚ୍ଛା ସତ୍ତ୍ୱେ ଭିଡିହୋଇ ଚାଲୁଥିବା
କ୍ଲାନ୍ତ ଉଦାସ ଶଗଡ଼ଟାକୁ !

ଘର ପାଖରେ ପହଞ୍ଚିବା ପୂର୍ବରୁ
ତମେ ଚଷମାଟି ଆଖିରୁ ଖୋଲି
ମୋତେ ଫେରାଇ ଦେବାକୁ ବସିଲ ;
'ଇସ୍, ମୁହଁଟା ତମର କେତେ ଅସହାୟ ଦିଶୁଛି ।'
ଚଷମାଟି ପୂର୍ବପରି ପିନ୍ଧିଥାଅ
ଏବଂ ମୋତେ ଅବଜ୍ଞାପୂର୍ଣ୍ଣ ଦୃଷ୍ଟିରେ ଚାହଁ
ମୁଁ ତୁମର କରୁଣା ଭିକ୍ଷା କରିବି ।'

## ।। ପହରାବାଲା ।।

ଜହ୍ନରାତି ଓହ୍ଲାଇ ଆସେନି କେବେ ତା ପିଠିରେ
ହାତ ବୁଲାଇବା ଲାଗି ଟିକିଏ ସ୍ନେହରେ
ରାସ୍ତା ଦାଢ଼େ ଶୋଇଥିବା ଷଣ୍ଢର ପିଠିରେ ବରଂ
ଚୁଟିଆ ମୂଷାଟି ପରି ଜହ୍ନ ଖେଳୁଥାଏ ଏବଂ
ଶୁଭୁଥାଏ ସେହିପରି ଷଣ୍ଢଟିର ନିଶ୍ଚିନ୍ତ ପାକୁଳି
କେତେବେଳେ ଚଢ଼େଇ ବସାରୁ କିଛି କୁଟା କାଠି ପ୍ରଚଣ୍ଡ ଶବ୍ଦରେ
ଖସିପଡ଼େ ଭୂଇଁରେ ଓ କଣ୍ଟାବାଡ଼ ମାନ ଭୟେ ବିବର୍ଣ୍ଣ ଦିଶନ୍ତି ।
ପହରାବାଲାଟି ଗ୍ରହେଁ ପଛକୁ ଓ ଦେଖୁଥାଏ ଟର୍ଚ୍ଚ ଆଲୁଅରେ
ଗେଟ୍ ସବୁ ଗ୍ରବି ପଡ଼ି କରୁଣ କରୁଣ ।

ଏ ପାଖର ଭଙ୍ଗାକୋଠା ସେ ପାଖରେ ତାଳଗଛ
ଡେଇଁ ଆଉ ଆଗକୁ ଯିବା ମନା
ପ୍ରତିଥର ଫେରିଆସେ ଏକ ଦୁଇ ଗଣି ଗଣି ଅବା ଛୋଟ ପିଲା
ଅଜାଣତେ ନିଜ ଯୋତା ଶବ୍ଦ କେବେ ଭାରୀ ହୁଏ
ଶୁଣାଯାଏ ଘୋଡ଼ାଟାପୁ ପରି
ଭୟରେ ଚିତ୍କାର କରେ, କିଏ ସେ ମାଡ଼ି ଆସୁଛି
ଦେହରେ ବନ୍ଧୁକ ଛୁରା, ଘୋଡ଼ା ଚଢ଼ି କଳା ମୁଖା ପିନ୍ଧି
ଅନ୍ଧାରିଆ ଘର ସବୁ ପୂର୍ବ ପରି ନିଶ୍ଚଳ ଓ
ନିଶ୍ଚିନ୍ତରେ ଶୋଇଥିବା ଲୋକଙ୍କର ଗଭୀର ନିଃଶ୍ୱାସ
ପହରାବାଲାର କାନେ ପିଟି ହୁଏ
ତା ଚିତ୍କାର ପ୍ରତିଧ୍ୱନି ସଙ୍ଗେ ।

ଏ ଭିତରେ କେତୋଟି ପତ୍ର ଝଡ଼ିଛି ଗଛଟିରୁ
ଠିକ୍ କହି ନ ହେଲେ ବି ଆଠ କିମ୍ବା ନଅଟିରୁ କମ୍ ନୁହେଁ
କେଁ କେଁ ଡାକୁଥିବା ବୋଝେଇ ଶଗଡ଼ ପରି
ଭିଡ଼ି ହୋଇ ଚାଲୁଥିବା ବେଳେ
ଅପେକ୍ଷା କରିବା ଲାଗି ସାଧ୍ୟ ନାହିଁ, କେତେବେଳକେ ଖସିବ ଦଶମ ପତ୍ରଟି
ରାସ୍ତାଘାଟ ଦିଶିବ ଟିକିଏ ସଫା, ଅନ୍ଧାର ହଟିବ
ଖୋଜି ଖୋଜି ନୟାନ୍ତ ପହରାବାଲା
ଚାବିଲେଛାଟି ରାସ୍ତାରୁ ହଠାତ୍ ପାଇବ ।।

ଝର୍କା ଖୋଲି ରହିଲେ ତ
ବାଘର ଗର୍ଜନ
(ମୋ କାନ୍ଧରେ ସେହିପରି ହାତ ରଖିଥାଅ ।)

ଠିଆହେଲେ ସ୍ଥିର ହୋଇ
ପିମ୍ପୁଡ଼ିଙ୍କ ଜ୍ୱାଳା
(ମୋ କାନ୍ଧରେ ସେହିପରି ହାତ ରଖିଥାଅ ।)

ପାହାଚରୁ ଓହ୍ଲାଇଲେ
ନିର୍ଘାତ କଚଡ଼ା
(ମୋ କାନ୍ଧରେ ସେହିପରି ହାତ ରଖିଥାଅ ।)

ଖରାଟାଣ ହୋଇଗଲେ
ପାଦ ବ୍ୟଥା କରେ
(ମୋ କାନ୍ଧରେ ସେହିପରି ହାତ ରଖିଥାଅ ।)

ଶୋଇଗଲେ ନିଶ୍ଚିନ୍ତରେ
ଭୟଙ୍କର ସ୍ୱପ୍ନ
(ମୋ କାନ୍ଧରେ ସେହିପରି ହାତ ରଖିଥାଅ ।)

## ।। ପୁନଶ୍ଚ ସକାଳ ।।

ପରଦାର ଅନ୍ତରାଳେ ଟ୍ରାଜେଡ଼ିର ଶେଷ ଦୃଶ୍ୟ ପାଇ
ଗ୍ଳିଥିବ ପ୍ରସ୍ତୁତି ଓ ଖଟ ଓ ଚଉକି ଟଣା ଶବ୍ଦ ଶୁଭୁଥିବ
ଦର୍ଶକମାନେ କ୍ରମଶଃ ମୂକ ହୋଇ ଯାଉଥିବେ
ଶବ୍ଦର ଅଦୃଆ ସୂତା ଭୟଙ୍କର ସାପମାନଙ୍କର,
ଯିବାର ଉପାୟ ନାହିଁ, ତଳେ ପାଦ ପକାଇବା ଅସମ୍ଭବ,
ଘରସାରା ଜଳିଲା ଜଳିଲା ।

ବୃଦ୍ଧ ପିତା କ୍ଳାନ୍ତ ହୋଇ ବସିଥିବେ ଚଉକିରେ,
ନିରୁଦ୍ଦିଷ୍ଟ ପୁଅ ଚଉକିରେ, ପଢ଼ା ଟେବୁଲରେ ତାର ବହି ସବୁ
ଇତସ୍ତତଃ, ପୃଷ୍ଠା ମୋଡ଼ା ହୋଇ ପଡ଼ିଥିବ
ସାର୍ଟ ପେଣ୍ଟ ଝୁଲୁଥିବ କେତେଖଣ୍ଡ
ଘର ସାରା ଝାଳ ଗନ୍ଧ ଘୂରି ବୁଲୁଥିବ,
ଉଦାସ ଦୃଷ୍ଟିରେ ଗୃହିଁ ଝର୍କା ପାଖେ ଠିଆ ହେବେ
ମଇଳା କାଗଜ ଖଣ୍ଡେ ଉଠାଇବେ ଧୀରେ ତଳୁ
କାଳେ କଣ ଲେଖା ହୋଇଥିବ ।
ସେ ଫେରି ଆସିବେ ପୁଣି ବିଛଣାକୁ,
ଶୋଇରହି କାନ ପାରି ଶୁଣୁଥିବେ ପୁଅର ପାଟି ଓ ହସ
ଶୁଭୁଅଛି,
କ୍ରମେ କ୍ରମେ ମିଳାଇ ଯାଉଛି ପୁଣି
କେଉଁ ଦୂର ପାହାଡ଼ ଗୁମ୍ଫାରେ
ଯେଉଁଠାରେ ଗଛବୃଛ ଜଳିଯାଏ ମୁହୂର୍ତ୍ତକେ
ଖଣ୍ଡାଦିନ ଦୀର୍ଘ ନିଃଶ୍ୱାସରେ ।

ଖାଁ ଖାଁ ପ୍ରିଡ଼ିଆରେ ଖଜୁରୀ ଗଛଟେ
ଯେମିତି ଠିଆ ହୋଇ ଗ୍ରହୁଁଥାଏ ଖାଲି ଏଣେ ତେଣେ
ସତେ କିଏ ଆସିଲା କି, ପାଦଶବ୍ଦ କାର ?
କିମ୍ବା ପୂର୍ବପରି ଇଏ ପବନର ପରିହାସ ନିର୍ମମ; ନିଷ୍ଠୁର ।
ମୁଁ ସେମିତି କେତେବାର୍ ଅନ୍ଧ ଆବେଗରେ
ଫୁଲ ସବୁ ଝାଡ଼ି ଦେଇ ମୋ ଡାଳରୁ ତଳେ ବିଞ୍ଚିଅଛି
କେହି ଥରେ ଭୁଲରେ ବି ଆସିନାହିଁ ଗୋଟାଇ ନେବାକୁ,
ଖଣ୍ଡିଉଡ଼ା ଦେଉ ଦେଉ ପୁଣି କେବେ ଛୁଆ ପକ୍ଷୀ ପରି
ବସାରୁ ପଡ଼ିଚି ଖସି, ଦେହସାରା ପିମ୍ପୁଡ଼ିର ଧାର,
କେବେ ଥରେ ମୁଁ ଦେଖିନି ଆକାଶ ଚିତ୍ରିତ ହେବା,
ଆକାଶ ରଙ୍ଗ ସହିତ ପାଣି ତାର ରଙ୍ଗ ବଦଳାଇ
ଚନ୍ଦ୍ର ସାଙ୍ଗେ ଖେଳୁଥିବା ଛୋଟ ଛୋଟ ଲହଡ଼ି ଦୋଳାଇ ।

କେତେ ବେଶି ହସ ଲାଗେ ଛାତିର ଗୋପନ କଥା
ଲୁଗ୍ ହୋଇ ରହିଥିବା ମୁହଁକୁ ଦେଖିଲେ,
ମୁହଁସାରା କେତେ ରେଖା ସମୟର ସ୍ୱଚ୍ଛ ଦର୍ପଣରେ
ପିଲାଙ୍କ ନିଷ୍ଠୁର ଖେଳ କରିଛ ସାଥୀରେ
ବାଘ ହିଂସ୍ର ପଶୁ ହୁଏ ମଣିଷର ତଣ୍ଟି କଣା କଲେ
ମଣିଷ ଦେବତା ହୁଏ ଏହିପରି ଏକ ଘଟଣାରେ ।।

ସେଦିନ ମୁଁ ଶେଷଥର ପାଇଁ ମୋର
ଚିଠିଖଣ୍ଡି ଲେଖି ସାରି ପୁଣି ପଢ଼ିନେବି
କେଉଁଠାକୁ ଯିବ ମୋର ଚିଠି,
ମୁଁ କାହିଁକି ଲେଖୁଚି ଓ କଣ ଲେଖୁଅଛି
ଭାବୁ ଭାବୁ ଠିକଣା ଲେଖିବା କଥା ଭୁଲି ସାରିଥିବି,
ଆଖି ମୋର ଛଳ ଛଳ ହୋଇଯିବ, ଦିଶିବନି କିଛି
ତା ପରେ ମୁଁ ଏକମୁହାଁ ଗ୍ଲଲିଯିବି
କୁଆଡ଼େ ମୁଁ ଯାଉଅଛି ପୁଣିଥରେ ଭାବିବାର ଅବକାଶ ନାହିଁ

ଗୃରିଆଡ଼େ ଝଙ୍କଗାଡି, ଛୋଟ ପିଲା ପରି
ଝଙ୍କ ଗୁରୁଣ୍ଡି ବୁଲୁଚି, କୁରୁଳୁଚି କେବେ ରହି ରହି ।

ଦ୍ୱାର ମୋ ମୁକୁଳା ଥିବ, ଝର୍କାବାଟେ ପବନର ସଂଗୀତ ଟୁକୁରା,
ବଂଶୀ ନାଦ ଶୁଭୁଥିବ, ପୃଥିବୀକୁ କରି ଆତ୍ମହରା
ଗଛର ନିକଟତର ହୋଇଯିବ ଆକାଶଟା
ବେଙ୍ଗଙ୍କର ବାସ୍ନା ହେବ କ୍ରମେ ତୀବ୍ରତର
ପୋଖରୀର ମାଛ ସବୁ ଡେଉଁଥିବେ ଉପରକୁ
ଜୁଳୁ ଜୁଳା ପୋକ ସବୁ ଉଡ଼ି ବୁଲୁଥିବେ
ସେମାନଙ୍କୁ ଗୃହିଁବାର,
ଅନ୍ଧାର ଭିତରେ ପୁଣି ଆଲୁଅ ଖୋଜିବାର
ସମୟ ନ ଥିବ ମୋର ରାସ୍ତା ଚିହ୍ନି ଗୃଲିବାକୁ
ଆଖି ଭର୍ତ୍ତି ନିଦର ଜୁଆର ।

ରାସ୍ତାସାରା ଭଙ୍ଗା କାଚ ପଡ଼ିଥିଲା ଅନ୍ଧାରରେ, କିଛି ନାହିଁ ଆଉ
ପିଲାମାନେ ଯାଉଚନ୍ତି ଇସ୍କୁଲକୁ ଧୋବଲୁଗା ପିନ୍ଧି
ବାଛୁରୀ ଆସୁଚି ଡେଇଁ ଅମାନିଆଁ, ଗାଈ ହମ୍ବାଳୁଚି
ବରଫଳ ଖାଇବାକୁ ମାଙ୍କଡ଼ଙ୍କ ଭିଡ଼ ଜମିଅଛି,
ପୁନଶ୍ଚ ସକାଳ ହେଲା, ଆଶ୍ଚର୍ଯ୍ୟ ସକାଳ
ତଥାପି ପାରୁନି ଛୁଇଁ ଚଢେଇଙ୍କ ମଧୁ କଳରୋଳ ।।

## ।। ପ୍ରାର୍ଥନା ।।

ମୋର ପ୍ରାର୍ଥନା
ହଜି ଯାଉଥିବା କୋଇଲିର ଗୀତକୁ
ଫେରାଇ ଆଣିବା ଲାଗି,
ଅଥଚ
ନଇକୂଳ ହୋଇ ଉଠିଚି
ଭୟଙ୍କର ଭାବେ ନିର୍ଜ୍ଜନ ।।

ମୋର ପ୍ରାର୍ଥନାରେ
ତାରାମାନଙ୍କର ଆଖି ଫୁଟି ଯାଇଛି
ସେମାନେ ନିଃଶବ୍ଦରେ
କାଳର ସାଙ୍ଗରେ ଖସିପଡ଼ି
ଭୂଇଁରେ ଅଙ୍ଗାର ହେଉଛନ୍ତି
ଘୁରିଆଢ଼େ ରାତିରେ ଗଭୀର ଅନ୍ଧକାର ।।

ମୁଁ ଆଉ ପ୍ରାର୍ଥନା କରିବି ନାହିଁ
ଚନ୍ଦ୍ରକୁ,
ତମର କୋମଳ ପାପୁଲିରେ
ରାତିର ଫୁଲ ଗୁଡ଼ିକୁ
ଆଉଁସି ଦିଅ ବୋଲି ।।

## ।। ଶିଶୁ , ଆଖି ଖୋଲ ।।

ଶିଶୁ, ଆଖି ଖୋଲ !
ଆଖି ଖୋଲ !
ମନ୍ଥର ରାତିର ଦୋଳିରେ ଝୁଲି ଝୁଲି
କି ସ୍ୱପ୍ନରେ ଏମିତି ହସୁଥିଲ ନିଃଶବ୍ଦରେ ।

ସୂର୍ଯ୍ୟ ଆଲୁଅ ପଶି ଆସୁଛି ଧୀରେ ଧୀରେ
ତମରି ଝର୍କାବାଟେ ଭୟ ଭୟ କରି
ଯେମିତି ଜଳଚର ଜୀବଟିଏ ସ୍ଥଳ ଆଡ଼କୁ,
ତମର ନିଃସଙ୍ଗତା ଦେଖି ସାହସୀ ହୋଇ ଉଠୁଚି ,ସେ
କ୍ରମଶଃ ଶକ୍ତ ହୋଇ ଉଠୁଚି ତାର ହିଂସ୍ର ପଂଝା
ତମକୁ ଚକଟିଏ ପରି ତମର ଅନିଛା ସତ୍ତ୍ୱେ
କେତେବେଳେ ସେ ଗଡ଼ାଇ ନେବ
ବାହାରକୁ ।

ହୃଦୟହୀନ ବଜ୍ରପରି ତା କପାଳର କୁଟୀଳ ରେଖା
ତମେ ଆଉ ଉଦ୍ଦେଶ୍ୟହୀନ ଭାବରେ ଆଖି ବୁଜି
ହାତଗୋଡ଼ ହଲାଅନା
ଆଉ ପାପକୁ ପ୍ରଶ୍ରୟ ଦିଅନା ।

ଶିଶୂ, ଆଖି ଖୋଲି ଥରେ ଚ଼ହିଁ ଦିଅ
ଦେଖିବ, ସୂର୍ଯ୍ୟକିରଣ କିପରି
ଛିଣ୍ଡା କାଗଜ ପରି ଉଡ଼ି ବୁଲୁଛି,
କାଗଜ ଫାଙ୍କରୁ ଝରି ପଡୁଥିବା ରଙ୍ଗ ସବୁ
ଅଭିବ୍ୟକ୍ତିହୀନ ହୋଇ ପଡୁଛି ।

## ।। ପଶୁରାଜ ।।

କ୍ଷୀଣ ନଈଧାରଟି କୁଳୁ କୁଳୁ ଧ୍ୱନିରେ
ଛଳ ଛଳ ହୋଇ ବହିଯିବ କାହିଁକି ?
ତାର ପଥରୋଧ କର ।

ଗଛ ତାର ଶାଖାରେ ନୂଆ ପତ୍ର କଅଁଳାଇ
ପବନ ସାଥୀରେ ଲୁଚକାଳି ଖେଳିବ କାହିଁକି ?
ତାର ମୂଳ ଛେଦନ କର ।

ହରିଣ ଛୁଆଟି ନିର୍ଜନ ବଣ ଭୂଇଁରେ
ଏଣେ ତେଣେ ଦୌଡ଼ି ବୁଲିବ କାହିଁକି ?
ତାର ତଣ୍ଟି କଣାକର ।

ପଶୁରାଜ ଚିତ୍‌କାର କରୁଛି ଅରଣ୍ୟରେ
କିଏ କେଉଁଠି ଅଛ ଆସ
ମୋର ପ୍ରଭୁତ୍ୱ ସ୍ୱୀକାର କର
ଦୁର୍ବଳ ତୁମମାନଙ୍କୁ ମୁଁ ଦେବି ଖାଦ୍ୟ ଓ ଆଶ୍ରୟ ।
ତୁମେ ନିଶ୍ଚିନ୍ତରେ ନିର୍ଭୟରେ ବିଚରଣ କରି ପାରିବ ।
ଜାଣି ରଖ କ୍ଷଣ କ୍ଷଣକେ ମୋର କ୍ରୋଧ
ଇଚ୍ଛାନୁସାରେ ମୁଁ ତୁମକୁ ଉତ୍ପୀଡ଼ନ କରିବି
ତୁମେ କିନ୍ତୁ ପ୍ରତିବାଦ ନ କରି କହିବ—
ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ ।।

## ।। ଶୁଭରାତ୍ରି !! ।।

ମୋର ଯେତେ ଅର୍ଥହୀନ ଗୀତ ଶୁଣିବାକୁ
ପୁରୁଣା ଆକାଶ କେତେ ଆଗ୍ରହରେ ଠିଆ ହୁଏ
ଝର୍କା ଆରପଟେ,
ମୋ ଭାଷା ସେ କଣ ବୁଝେ
ମୋ ମୁହଁରୁ କଣ ପଢ଼େ ଖାଲି ହସୁଥାଏ,
ଏମିତି ଅନେକ ଥର ମନେହୁଏ ଏ ଆକାଶ
କେ'ତ ଅନ୍ତରଙ୍ଗ,
ମୁଁ ତ ଛୋଟ ମଣିଷଟେ,
ଅଥଚ ଟିକିଏ ହେଲେ ଭୟ ନାହିଁ ମୋର
ତା ଦେହର ମାନଚିତ୍ର ପଢ଼ୁ ପଢ଼ୁ
ହୁଏତ ମୁଁ କେଉଁଠାରେ ହଜି ଯାଇ ପାରେ,
ପିଲାଦିନ ପ୍ରାର୍ଥନାର ପ୍ରଥମ ଧାଡ଼ିଟି ମୋର ମନେପଡ଼େ,
ଉଚ୍ଚସ୍ୱରେ ଗାଇବାକୁ ପ୍ରବଳ ସଙ୍କୋଚ,
କାରଣ ମୁଁ ଅର୍ଥ ସବୁ ବୁଝିଲିଣି,
ଆଉକଣ ପ୍ରତାରଣା କରିହେବ ଆକାଶକୁ ?
ତା ଆଡ଼କୁ ସତର୍କରେ ଗ୍ୱହିଁ ଗ୍ୱହିଁ
ସମୟ କଟୁଚି ମୋର ଅପେକ୍ଷାରେ, ଖାଲି ଅପେକ୍ଷାରେ ।।

କାନ୍ଥଘଡ଼ି ପରିହାସ କରୁଅଛି
ମୋ' ଛାତି ଭିତର ଶବ୍ଦ ଅନୁ କରଣରେ

ନିଦ କଣ ଆସିବନି, ଏ ତେବେ କାହାର
ଜୋତା ଶବ୍ଦ ଶୁଭୁଅଛି ଡାକବାଲା ଜୋତାଶବ୍ଦ ପରି
ସେ କେଉଁଠି ଗଳିମୁଣ୍ଡେ ବତୀଖୁଣ୍ଟ ପାଖେ
ଆଜି କଣ ମୋର କିଛି ଚିଠି ନାହିଁ,
ବୋଧହୁଏ ସେହିଠାରୁ ସିଏ ଫେରିଗଲା,
ରାତିର ତରଙ୍ଗ ହଜେ ଗୋଟିଏ ପରେ ଗୋଟିଏ
ଗଣିବାର ବ୍ୟର୍ଥ ଚେଷ୍ଟା, ଦଦରା ଡଙ୍ଗାଟି ଭାସେ
ସମୁଦ୍ରରେ, କୂଳ ହୁଏ କ୍ରମଶଃ ନିରୋଳା ।

ମଣିଷର ଇଚ୍ଛା କେତେ ଭୟଙ୍କର
ସମୟର ମୁହଁ ପରି ନିଃଶେଷ କରିବା ଲାଗି ଅନ୍ୟର ସତ୍ତାକୁ
ମୁଁ ଯଦିଚ ପଶୁଟିଏ ହୋଇଥାନ୍ତି
ନିଜକୁ ଅପମାନିତ କରନ୍ତିନି, ଅବିଶ୍ୱାସ କେବେ,
ସକଳ ଯନ୍ତ୍ରଣା ମୋର ସମ୍ବୋଧନହୀନ ଚିଠି ପରି
ନିତାନ୍ତ ରୋମାଞ୍ଚକର ହୋଇଯାନ୍ତା,
ପଥରବନ୍ଧ ତଳକୁ ନଈର ଡେଇଁବା ବେଳ
ପ୍ରବଳ ଆଗ୍ରହ ଆଉ କୌତୂହଳ ନେଇ
ଆସି ମୋର ପାଖେ ପହଞ୍ଚନ୍ତା,
ସେ କିଏ ସେ ମୋର ଚିର ପ୍ରତୀକ୍ଷିତ
ମୋ ଛାତିରେ ମାଆ ପରି ହାତ ଥାପୁଡ଼ାଇ
କହୁଥାନ୍ତା 'ଦୁଷ୍ଟପିଲା !
ଚୁପ୍‌ଗପ୍ ନ ଶୋଇଲେ ଯିବି ମୁଁ ପଳାଇ ।'

ପାହାଡ଼ର ଶେଷ ସୂର୍ଯ୍ୟାଲୋକ ହଜିଯିବ ଯେତେବେଳେ
ଗଛଲତା ଗୃହୁଁଥିବେ ଆଶ୍ଚର୍ଯ୍ୟ ଭଙ୍ଗୀରେ ।
ଅନ୍ଧାରରେ ଲୁଚିଛପି ଗଲୁଥିବି ନିର୍ଜନ ରାସ୍ତାରେ
ଦେଖାଯିବ ରେଳଗାଡ଼ି ଯାଉଅଛି
ଅନ୍ଧାରକୁ ଠାଏ ଠାଏ ଆଲୁଅ ଫୋପାଡ଼ି
ଅକସ୍ମାତ୍ ମୁଁ ଦେଖିବି ନିର୍ଜନରେ ତୁମେ ଠିଆ ହୋଇ

ବଢ଼ାଇଛୁ ଦୁଇବାହୁ ଦିଗ୍‌ବଳୟ ପରି
ମୁଁ ଅଚିହ୍ନା ଲୋକଟିଏ
ବୋକାଳିଆ ଆଁଖି ତୋଳି ଚାହୁଁଅଛି
କି ସୁନ୍ଦର କାରୁକାର୍ଯ୍ୟଭରା ତୁମ
ସମୁଜ୍ଜ୍ୱଳ ଆଖିର ନଗରୀ ।।

ଏତେବେଳେ ନିଦ ମୋର ଆସିଯିବ
ସମତଳେ ବନ୍ୟାସ୍ରୋତ ପରି
ବିଦାୟ ମୁଁ ମାଗିନେବି ଘଡ଼ିଠାରୁ, କ୍ୟାଲେଣ୍ଡରଠାରୁ
ପୁରୁଣା ପ୍ରାର୍ଥନା ଗୀତ ଇଚ୍ଛା ହେବ
ଗାଇବାକୁ ପୁଣି ହାତ ଯୋଡ଼ି,
କାନ୍ଥରେ ଅସ୍ପଷ୍ଟ ଛାଇ !
ମୁଁ ମୋର ସାମ୍ରାଜ୍ୟ ଏବେ ପାଇଅଛି,
ମାଗୁଛି ବିଦାୟ,
ନିର୍ବାସନ ଶେଷ ହେଲା
ଶୁଭ ରାତ୍ରି ! ଝଙ୍କାର ଆଲୁଅ !

## ।। ଶ୍ରୋମକ୍ରନ ।।

ଦୁଃଖ ଛଡ଼ା କିଣ ଆଉ ହୋଇପାରେ
ଦୁଃଖର କାରଣ ?
ନିର୍ଜନ କ୍ୟାକଟସ୍ ପରି ଅଭିମାନେ
ବାରମ୍ବାର ଜଳିବାର ଅର୍ଥ କଣ ?
କେବଳ ଜ୍ୱଳନ ।।

ସିଏ କେଉଁ ଅଜଣା ଫୁଲର ବାସ୍ନା
ଅସଂଖ୍ୟ ଫୁଲ ଭିତରେ କରେ ବାଟବଣା,
ସମୟ ଏକାନ୍ତ ନିଃସ୍ୱ
ଅସମ୍ଭବ—ରଙ୍ଗର ଯନ୍ତ୍ରଣା ।।

ବୟସର ଧୈର୍ଯ୍ୟହୀନ ପାଦଶବ୍ଦ
ଆକାଶକୁ ଆକାଶ କହିଲି ବୋଲି ;
ଅତୀତର ଝାପ୍ସା ମୁହଁ ;
ନିଜକୁ ନିଜେ ବା କିଆଁ
ଏମିତିକା ଅପମାନ ଦେଲି ।।

## ।। ସମୁଦ୍ର ନିରୁତ୍ତର ।।

ଏତେ କଥା ତମେ କହି ଗଲିଛ କାହାକୁ ?
କେହି ନ ଶୁଣିଲେ ବି
କଣ ତମେ କହିବ ?
ତମ କଥା ତ ସବୁ
ସମୁଦ୍ର ଶୁଣି ନେଇ,
ଅଥଚ ଏପର୍ଯ୍ୟନ୍ତ ସେ
କଣ କହିଛି ତମ ଆଗରେ ?
ସେ ଜାଣିଲା—
କେତେ ଦୁର୍ବଳ ତମର ମନ
ସେ କିନ୍ତୁ ନିରୁତ୍ତର ।।

## ।। ଛୁଟିଧ୍ୱନ ।।

ସୂର୍ଯ୍ୟ ଆଉ ଜଳୁନାହିଁ ସେମିତି ଦୁଃଖରେ
ଚିଲମାନେ ଆକାଶରେ ସ୍ଥିର ଓ ନିଶ୍ଚଳ
ରେଲଗାଡ଼ି ଶବ୍ଦ ଆଉ ଶୁଣା ଯାଉ ନାହିଁ
ଲୋକମାନେ ଅପେକ୍ଷାରେ
ସାମନାରେ ଦିଶେ ଭଙ୍ଗା ପୋଲ ।

ପୃଥିବୀର କେତେ ଅଂଶ ଦେଖାଯାଏ
ଦୁଇଟି ଆଖିରେ
କେଉଁମାନେ ଥକିଗଲେ
କେତେ ପାଦ ଚାଲି କେଉଁଠାରେ
ଚାଲିବାଠାରୁ ଆନନ୍ଦ କିଛି ନାହିଁ
କିଏ ସେ ହିସାବ ରଖେ
ବନ୍ଦୀମାନଙ୍କର ସଂଖ୍ୟ କେତେ ହୋଇପାରେ ?

ଏମିତିକା ଖୁବ୍ ଭଲ
ଅଧୀନସ୍ଥ ହୋଇଗଲେ
ଅନ୍ୟ କାର ସ୍ନେହ ମମତାରେ
ହୁଏତ ମୋତେ ଏଠାରେ ଘୃଣା କରିପାର
ମୋ ଘରର ନୀରବିତା କ୍ଷୁଣ୍ଣ ହେବା ଦେଖି
ତମେ କାଳେ ବେଶୀ କ୍ଷଣ ରହିବାକୁ ପସନ୍ଦ ନ କର

ଯେତେବେଳେ ତମେ ଆସ
ଭୟେ ଭୟେ ଘୁଞ୍ଚିଯାଏ ଏଠାରୁ ସମୟ
ବସି ବସି ଗଳ୍ପ କର
ଛୁଟୁଥାଏ ହସର ଫୁଆରା

ଜୀବନରୁ ପଳାୟନ ଟିକେଡ଼େ ସହଜରେ
ଗୁ କପେ ଦେଇ ପାରି ନାହିଁ ବୋଲି
ମନ ଦୁଃଖ କେବେ କରିନାହିଁ
ଚଉକିର ଧୂଳି ସବୁ ଲାଗି ଯାଏ ତମ ଜାମା ସାରା ।

କେବେ ତମେ ଗ୍ଲିଯାଅ,
ଦୁଃଖି ଯେତେ ସେଇ ମୁହୂର୍ତ୍ତରେ
ଭଙ୍ଗା ପୋଲ ଯୋଡ଼ି ହୁଏ,
ଗାଡ଼ି ଘୋଡ଼ା ପୁଣି ଗ୍ଲୁଥାଏ
କି ଏକ ବିଚିତ୍ର ନିଶା
ତଥାପି ତ ଏଇମିତି ଅପେକ୍ଷାରେ ରହେ
ନୂଆ ରେଲ ଟାଇମ ଟେବୁଲ ପୁଣି ଛପା ହୋଇଯାଏ ।

ସବୁଦିନ ସୂର୍ଯ୍ୟକୁ ମୁଁ ନମସ୍କାର କରୁଥିବି
ପୁରୁଣା କର୍ମ ଯୋଜନା ନୂଆ ହୋଇ ପୁଣି ଠିଆ ହେବ
ସବୁଜ ପତ୍ରରେ ନିଆଁ ସେଇମିତି ଜଳୁଥିବ
କ୍ଷୋହଲ ପ୍ରହର
କଣ ମୋତେ ମିଳିଯାଏ
ମୁଁ ଜାଣିନି କଣ ସେ ମିଳିବା
ସବୁ କିଛି ହରାଇବା ଭିତରେ ମୋହର ।।

## ।। ସେ ଆଉ ଏଠାରେ ରହୁନାହାନ୍ତି ।।

ତମ ଘର ଫାଟକରେ ନୂତନ ନାମ ଫଳକ
ମୋତେ ହଠାତ୍ ବାଧା ଦେଲ—
'ସେ ଆଉ ଏଠାରେ ରହୁ ନାହାନ୍ତି ।'
'ସେ ଆଉ ଏଠାରେ ରହୁ ନାହାନ୍ତି ?'—ମୋର ପ୍ରଶ୍ନ
ପ୍ରତିଧ୍ୱନିରେ ଫେରି ଆସିଲା ଉତ୍ତର ହୋଇ ।

ତମେ ନିଃସ୍ୱ ହୋଇ କେଉଁ ଆଡ଼େ ଚାଲି ଯାଇଛ !
ମୋତେ ଦେଇ ଯାଇଛ
ଆହୁରି ବଡ଼ ହେବାର ସମସ୍ତ ମୋହ ।
ଯାହା ସବୁ ଗଢ଼ି ଉଠିଥିଲା, ମୋରି ଆଖି ଆଗରେ
ସବୁ ପୋଡ଼ି ଯାଇଛି,
ପାଉଁଶ ଭିତରେ ମୁଁ ଦେଖି ପାରୁଛି
ଗୋଟାଏ ଅନିର୍ବାଣ ଶିଖା,
ଯାହା ମୋତେ ଦଗ୍ଧ କରୁଛି ବାରମ୍ବାର ।
ସବୁ ଦେଇ ମୋତେ କେଉଁ ରିକ୍ତ କରିଗଲ ?
ମୁଁ କାନ୍ଦୁଛି ନା ଆକାଶର ନକ୍ଷତ୍ରମାନେ କାନ୍ଦୁଛନ୍ତି ?

ନିର୍ବାକ୍ ହୋଇ ତମ ଘର ଆଡ଼କୁ ତଥାପି
ଚାହିଁ ରହିଥିବାର ଦେଖି
ସରି ଯାଇଥିବା ନିର୍ବାଚନ ପୋଷ୍ଟରର ମ୍ଳାନ କଣ୍ଠରେ
ଭିତରୁ ବନ୍ଦ ପୁରୁଣା ଫାଟକଟି କହିଲା—
'ସେ ଆଉ ଏଠାରେ ରହୁନାହାନ୍ତି ।'

## ।। ଗ୍ୟାଲେରୀ ।।

ଦୃଶ୍ୟ ପୁଣି ବଦଳିଲା
ଅଭିନୟ
ଅଭିନୟ
        ଏତେ ଦୂର ଉତ୍ତେଜିତ ହେବାର କାରଣ ନାହିଁ ।।

ତାଳି ଓ ଚିତ୍କାର ସଙ୍ଗେ ଅନ୍ୟମାନଙ୍କର
ନିଜକୁ ହଜାଇ ଦିଅ
ଗ୍ୟାଲେରୀର
        ଉପରୁ
        ତଳକୁ
କାହାରି ମୁହଁରେ
ବିରକ୍ତି ବା ଆତ୍ମଗ୍ଳାନି ନାହିଁ ।।

ମଞ୍ଚରୁ ଅଭିନୟ ଦେଖି
ଦର୍ଶକମାନେ
ଅଭିନୟ ପ୍ରବଣ ହେଉଛନ୍ତି ।।

ଗ୍ୟାଲେରୀର ପାହାଚ
ଅନେକ ପାହାଚ
ସବୁ ଏକାଭଳି ଦିଶେ
ପ୍ରଭୁତ୍ୱ ସମାନ ।

ଏହାପରେ
ସେମାନେ ମଟର ଗାଡ଼ିରେ ଯିବେ
ଅନ୍ୟମାନେ
ପାଦରେ ଚାଲିବେ ।।

## ।। ଅର୍ଥାନୁଶୀଳନ ।।

ଏ ଭିତରେ କ'ଣ ସବୁ ଘଟିଗଲା
ଶବ୍ଦମାନେ ଅର୍ଥହୀନ ହେଲେ,
ମୁଁ ଏପରି କି ନାଟକ ଦେଖିଲି ଯେ
ଗତ କାଲି ଠାରୁ
କେତେଟା ଦୃଶ୍ୟର ଖାଲି ରୋମନ୍ଥନ,
ନିଦାଘର ନିର୍ଜନ ପ୍ରହର
ସମୁଦ୍ରର ରଙ୍ଗ କଣ,
ଢେଉର ବୃତ୍ତ ଭିତରେ କାହାକୁ ବା ବନ୍ଦୀ କରି ହୁଏ,
ମୁଁ କିପରି ବୁଝାଇବି, ଶକ୍ତି କାହିଁ ମୋର ?

ମୁଁ ତ ଜାଣି ପାରୁ ନାହିଁ
ମୋ ମୁହଁ କିପରି ଦିଶେ ଏତେ ବଡ଼ ଶୋକର ଯନ୍ତ୍ରଣା
ସମ୍ଭାଳି ନେବା ସକାଶେ ଅପଚେଷ୍ଟା ପରେ,
ଭୟର କଠିନ ମୁହଁ ପଛ ଆଡ଼ୁ ମୋର ଦର୍ପଣରେ
ଯାହା ମୋତେ ନିକଟକୁ ଟାଣିନିଏ
ପୁଣି କେବେ ଦୂରେ ଠେଲି ଦିଏ ।

ଏଥିରେ ପାର୍ଥକ୍ୟ କଣ
ଗଛମୂଳେ ଠିଆ ହେବା ପୁଣି କେବେ ଗଛର ଉପରେ
କଣ ବା ଆନନ୍ଦ ଅଛି ଏଇପରି ପରିବର୍ତ୍ତନରେ,
ଶିଶୁର ଅଜସ୍ର ଇଚ୍ଛା ଉପରକୁ ପାହାଚ ପାହାଚ
ଉଦ୍‌ବେଗ ବହୁତ ବେଶି
ସ୍ଥାୟିତ୍ୱର ବଦଳରେ ଅନିଶ୍ଚିତତାରେ

ପ୍ରଚୁର ସନ୍ଦେହ ଭର୍ତ୍ତି ଆଖିରେ ଆଖିରେ
ତଥାପି ସେ ନିଶ୍ଚିତ ବିଶ୍ୱାସ ରୂପ
ଖୋଜି ଖୋଜି ମରେ ।

ଯାହା ସବୁ ଅନ୍ୟକୁ ସୁନ୍ଦର କରେ,
ଅନ୍ୟକୁ ବା କେବେ ଜାଳିଦିଏ
ସେ ସବୁ କଣ ଯେ କାହିଁ ?
ଧୂଆଁର କୁଣ୍ଡଳୀ କରେ ଆଚ୍ଛାଦିତ
କିଛି ଆଉ ଦେଖି ହୁଏ ନାହିଁ ।

କେବଳ ଅନେକ ଶବ କଳଙ୍କିତ ଗରଳ ବନ୍ୟାରେ,
ଭଲ ପାଇବାର ଅର୍ଥ ତା ଦେହରେ
ଜୀବନକୁ କରେ ସଞ୍ଚାରିତ
ଆକାଶ ଓ ସମୁଦ୍ରର ଚୁପ୍ ଗୁପ୍ କଥା ଯେତେ ସ୍ୱଷ୍ଟତର ହୁଏ
ସେଇ ଅର୍ଥ ସେଇପରି ନିର୍ବିକାର ଓ ତପସ୍ୟାରତ ।।

# ।। ଅଭିନୟ ।।

ମୋର ଅନିଚ୍ଛା ସତ୍ତ୍ୱେ
ପବନ ତା ଚାଲିବାର ଲୀଳାୟିତ ଭଙ୍ଗୀ ଭୁଲିଯାଏ
ମୋର ଅନିଚ୍ଛା ସତ୍ତ୍ୱେ ପବନ ଦେହରେ
ଅସମ୍ଭବ ଚର୍ବି ବୃଦ୍ଧି ହୁଏ
ଏବଂ ଆଗ୍ରହରେ ମୋ ଆଡ଼କୁ ଚାହୁଁଥିବା ଗଛମାନଙ୍କର
ପତ୍ରସବୁ ଛିଣ୍ଡିଆସି ଜମାହୁଏ ମୋର ପାଦତଳେ
ତଥାପି ଅଳ୍ପ ବୟସ୍କ ଯୁବକମାନଙ୍କୁ
ଡାକି ଗଳ୍ପ କରିବାକୁ ଇଚ୍ଛାହୁଏ ନାହିଁ ।

ମିଛେ ମିଛେ ଅତୀତକୁ ଫେରାଇ ଆଣିବା ଚେଷ୍ଟା
କିଛିକ୍ଷଣ ପାଇଁ
କଣ ଲାଭ, କୋଳାହଳ ମୋତେ ମୋଟେ ଭଲ ଲାଗେ ନାହିଁ,
କେମିତି ସଂପୂର୍ଣ୍ଣ ରୂପେ ଅସ୍ୱୀକାର ମୁଁ କରିବି
ଅଭିନୟ ଦେଖି ଦେଖି ଅନ୍ୟମାନଙ୍କର
ଅଭିନୟ କରିବାକୁ ଇଚ୍ଛା ଥରେ ହୁଏ ନାହିଁ ମୋର ?

ରାତ୍ରିର ନିର୍ଜନତା କେତେବେଳୁ ଆସି ନୀରବରେ
ମୁହଁ ପୋତି ଠିଆ ହୋଇଥିଲା ମୋର ବିଛଣା ପାଖରେ
ଜଣା ନାହିଁ,
ଏତେ ଶୀଘ୍ର ଭାବିବାର ଅବକାଶ ହେବ ଅବା
କାହିଁକି ମୋହର
କୋଳାହଳ ବିଦାୟ ମାଗିଲାବେଳେ
ଅନ୍ୟ ମନସ୍କ ଭାବରେ କହିଦେଲି ବର୍ତ୍ତମାନ
ତମେ ଯାଇପାର

ଅକସ୍ମାତ୍ ଏତେ ଭୟ
ଅବରୁଦ୍ଧ କୋଠରୀର ଗ୍ରରିପଟେ, ସେମାନଙ୍କ ଭାରୀ ପଦଶବ୍ଦ
ବାହାରକୁ ଯିବି ନାହିଁ, କରିବିନି ଆତ୍ମସମର୍ପଣ
ଗୋଡ଼ ଓ ହାତ ଲମ୍ବାଇ ଦର୍ପ ଭରେ ମୁଁ ବସିବି ଚଉକିରେ ମୋର

ସବୁ ଶବ୍ଦ ଭେଦ କରି ଶୁଭୁଅଛି
ବାହାରେ କାନ୍ଦଣା ସ୍ୱର, କାହାର କାନ୍ଦଣା
ମୋର କିବା ଯାଏ ଆସେ ହୋଇଥିବ ଯଦି ଜଣାଶୁଣା ।

ଅଭିନୟ ଭଲ ଲାଗେ ରୁଦ୍ଧ କୋଠରୀରେ
ଏଠାରେ ଆଶଙ୍କା ନାହିଁ ଦର୍ଶକର କଟୁ ମନ୍ତବ୍ୟର
ସଂଳାପ ଭୁଲି ଯିବାର ପ୍ରଶ୍ନ ନାହିଁ, ମନର ଓଜନ
ଖସିପଡ଼ି ଛିନଛତ୍ର ଫିଙ୍ଗି ହୋଇବାର
ମୁଁ ଏଠାରେ ନିର୍ଦ୍ଦେଶର ପରିବର୍ତ୍ତନର
ଅଟେ ନିୟାମକ, ତେଣୁ ସବୁକଥା ଅନ୍ୟମାନଙ୍କର
ଭାବି ବସି ହରାଇ ଦେବାକୁ କେବେ ଗ୍ରହେଁନାହିଁ
ବଞ୍ଚିବାର ଯେତେ ଅଧିକାର ।

ଆଖି ବୁଜିଦେଲେ ଥରେ
ପୁଣି କେବେ ଖୋଲିବାକୁ ଇଛାହୁଏ ନାହିଁ
ଅନ୍ଧାରରେ ପାଇହୁଏ ପୃଥିବୀର ଯାବତୀୟ ଅଲଭ୍ୟ ପଦାର୍ଥ
କିନ୍ତୁ ଆଖି ଖୋଲିଦେଲେ ଅଶେଷ ଯନ୍ତ୍ରଣା
ଏତେ କଷ୍ଟ ଦରିଦ୍ରର ଏକାନ୍ତ ସଞ୍ଚୟ
ସବୁ ଶେଷ ହୋଇଯାଏ
ଏହା ଠାରୁ ବଳି ଆଉ ଜୀବନରେ କଣ ଅଛି ବଡ଼ ପରାଜୟ।

କିଏ ସେ ଏ ବାଟେ ଯାଏ
କାହାକୁ ମୁଁ ଖୋଜୁଅଛି ଅକାରଣେ ଏଠି ରାତିଦିନ

ଅନ୍ୟମାନେ ସୁଖୀ ସବୁ, ମୋ ଦୁଃଖର ସମସ୍ତେ କାରଣ
ମୋ ପାଇଁ କେବଳ ସବୁ ଦୁଃଖମୟ
ଗଛ, ନଦୀ, ପର୍ବତ ଓ ଶ୍ୟାମଳ ପ୍ରାନ୍ତର
ସହର ଧୂଳିରେ ସବୁ ଅନ୍ଧ ହୁଏ
ଶେଷ ହୁଏ ନାହିଁ କେବେ ସହଜରେ ଗ୍ରୀଷ୍ମ ଦ୍ୱିପ୍ରହର ।

ଦିନେ ମୋତେ ଅଭିନୟ ଦେଖିବାର ପ୍ରଚଣ୍ଡ ଆଗ୍ରହ
ଅଭିନେତା କରାଇଲା, ଠିଆ କଲା ଜନତା ଆଗରେ
ଅଭିନୟେ ଲୁଗ୍ଲଇଲି ମୋ ନିଜସ୍ୱ ନାମ ଓ ଚରିତ୍ର
ଅଜସ୍ର ଆଗ୍ରହ ଭରା ମୁହଁରେ ମୋ ପ୍ରତିବିମ୍ବ
ଭୁଲାଇ ରଖିଲା ମୋତେ ବର୍ଷ ବର୍ଷ,
ରାସ୍ତା ଅତିକ୍ରମ କରିବାର ଉତ୍ତେଜନା
କ୍ରମେ କ୍ରମେ ଶେଷ ହେଲା ଦର୍ଶକଙ୍କ
ନିରାସକ୍ତ ମୁଖମଣ୍ଡଳରେ
ମନେ ହେଲା ଦୟାକରି ତଥାପି ଅପେକ୍ଷା କରି ରହିଛନ୍ତି
କେତେବେଳେ ଧୈର୍ଯ୍ୟ ଶେଷ ହେବ
ଚଳତ୍ ଶକ୍ତିହୀନ ହୋଇ ନୀରବରେ ମୁହଁ ପୋତି ଠିଆ ହେବି
ଗୋଟିଏ ଧାରରେ
ସେମାନେ ଆସିବେ ମାଡ଼ି ବିକଟ ଚିତ୍କାର କରି
ରଙ୍ଗମଞ୍ଚ ଉପରୁ ଠେଲିଦେବେ ମୋତେ ନିର୍ବିକାରେ ।

ହରାଇବା ଲାଗି ଭୟ ସବୁବେଳେ
ଏ ମଣିଷ ଏତେବଡ଼
କିନ୍ତୁ କେତେ ଛୋଟ ଆଉ ଅସହାୟ ମନେହୁଏ
ଭୟ ନିକଟରେ
ପବନରେ ଉତ୍ତେଜନା, ପ୍ରଚୁର ଆବେଗ
ତଥାପି ତ ଏ ସବୁର ପ୍ରାଚୁର୍ଯ୍ୟ ଭିତରେ
ଭରି ରହିଅଛି ପୁଣି

ବୟସ ବଢ଼ିବା ଏବଂ ନାଟକୀୟ ପରିବର୍ତ୍ତନର
ଏକ ନିତ୍ୟ ସତ୍ୟକଥା
କେବଳ ପ୍ରାପ୍ତିର ଇଚ୍ଛା ହେଉପଛେ ଅର୍ଥହୀନ
ବଞ୍ଚାଇ ରଖିଚି ଆଜି ପବନର ସମତଳ ପଡ଼ିଆରେ
ସ୍ତମ୍ଭ ଗଢ଼ି ଗଢ଼ି
ତେଣୁ ଭଲ ଉପରକୁ ଉଠିବାରେ
ନ ଗଣି ପଛରେ ଆଉ ଖସିବାର ସିଡ଼ି ।

## ।। କାଠୁରିଆର ଗୀତ ।।

କ୍ଳାନ୍ତ ଦେହେ କଣ ଆଉ ଅବଶେଷ ରହିଯାଏ
ରଙ୍ଗ ସବୁ ଛାଡ଼ି ଗଲା ପରେ,
କାଛର ଦୈର୍ଘ୍ୟ ଓ ପ୍ରସ୍ଥ,
ଛାତ ଓ ଚଟାଣ ସବୁ ନିରାପଦ,
ସମସ୍ତ ଶକ୍ତି ଅକ୍ଷୁଣ୍ଣ,
ଖରା ଓ ବର୍ଷାରୁ ଏବେ ରକ୍ଷା କରିପାରେ ।

କିଏ ଜଣେ ଆସିଥିଲା
ଖବର ଦେବାକୁ ମୋତେ
ପ୍ରଚଣ୍ଡ ଝଡ଼ ବତାସ
ଅନେକ ଡାଳ ଭାଙ୍ଗିଛି ବଗିଚାରୁ ମୋର
କଣ ଥିଲା ଦରକାର
ମୋ ପାଖକୁ ଆଣିବାରେ
ଏ ତୁଚ୍ଛ ଖବର,
ମୋ ଅନ୍ଧାର କୋଠରୀରେ
ହରରଙ୍ଗୀ ପୋଷାକ ଉତାରି
ବସିଥିଲି ଖୋଲା ଦେହେ
ମୋତେ ସେ ଦେଖି ନ ପାରି
ଫେରିଗଲା,
ବେଶ୍ ଭଲ ହେଲା ।

ବର୍ତ୍ତମାନ ମୋର ପଶା ପାଲିରେ ମୁଁ
ନିଜେ ନିଜେ ଖେଳିବି ଓ
ଜିଣାଇବି ମୋ ନିଜକୁ ଏଠି ବାରମ୍ବାର

ସମୟ କାହାକୁ ଝିଙ୍ଗ
ହର୍ଷ ଧ୍ୱନି କରି କରି, ଯାତ୍ରା ରଙ୍ଗ ପରି
କାଛର ଗୋଟିଏ ପଟୁ ପଦ ଗ୍ରହଣ କରିବି
ପୁଣି ପୂର୍ବ ସ୍ଥାନକୁ ମୁଁ ଆସୁଥିବି ଫେରି ।

ମୋ କୋଠରୀ ପାଖ ଦେଇ ଲମ୍ବା ରାସ୍ତା
କିଏ ସବୁ ଯାଉଥାନ୍ତି
ଅଥଚ ମୁଁ
ଶୋଇ ରହେ, ନିଶ୍ଚିନ୍ତ ଭାବରେ
ସେମାନଙ୍କ ପାଦ ଶବ୍ଦ ଗଣିହୁଏ ନିର୍ଜନ ପ୍ରହରେ
ସବୁକଥା ଶୁଣାଯାଏ । ପୂର୍ବପରି
ଉଦାସ ଉଦାସ ଲାଗେ
ରଂଗ ସବୁ କାଛ ଦେହୁ ଝଡ଼ିଗଲା ବେଳେ ।

## ।। ହଂସ ଅପେକ୍ଷା କରେ ।।

ବେଳ ବୁଡ଼ିଗଲେ
ପାଣି ନାଲି ହୋଇଯାଏ
ହଂସ ଉଡ଼ିଯାଏ ।

ହଂସ ଅପେକ୍ଷା କରେ
ପାହାଡ଼ ଉପରେ
ଅନ୍ଧାରରେ ତାର ବିବର୍ଣ୍ଣ ପକ୍ଷ,
ନିଜକୁ ଘୃଣା କରେ ।

ରାତି ଝାମ୍ପ ମାରୁଛି ପାହାଡ଼ ଉପରକୁ
ତାକୁ ପ୍ରତିରୋଧ କରିବ କିଏ
ପାଣି ମାଡ଼ି ଆସୁଛି
ପାହାଡ଼ ବୁଡ଼ିଯିବ ।

ଆଖିରେ ନିଦ ନାହିଁ
ଏତେ ଭୟ
ଏତେ ଆତ୍ମଗ୍ଲାନି
ଗଛଲତା ଫାଙ୍କରୁ ଦିଶେ
ମାଆର ଆଖି ।

ହଂସ ଅପେକ୍ଷା କରେ ମହାଭାରତର ଶ୍ରୀକୃଷ୍ଣ
(କପଟତାର ଅବତାର)
ଧର୍ମକ୍ଷେତ୍ର କୁରୁକ୍ଷେତ୍ରରୁ
ଫେରି ଆସୁଛନ୍ତି ।।

## ।। ଚଉକିର ଭଙ୍ଗା ଗୋଡ଼ ।।

ଚଉକିର ଗୋଟିଏ ଗୋଡ଼ ଭଙ୍ଗା
ଚଉକିଟି ନଇଁପଡ଼ି ଖୋଜୁଚି
ଗୋଟିଏ ହଳିଲା ମୁହୂର୍ତ୍ତକୁ ।

ତୁମେ ଆଉ ଗୋଟିଏ ଗୋଡ଼
ଯୋଡ଼ି ଦିଅନା
ସେ ସେମିତି ଥାଉ ।।

## ।। ଅର୍ଥ କୋଇଲି ।।

ସକାଳର ସୂର୍ଯ୍ୟ କିରଣ
କୋମଳ ଘାସର ଖୋଲା ପଡ଼ିଆରେ
ଯେତେବେଳେ ଧଳା ଠେକୁଆଟିଏ ପରି
ଡେଇଁ ଡେଇଁ ଯାଏ,
ମୁଁ କି ଅଫୁରନ୍ତ ଆବେଗରେ
ତା ପଛେ ପଛେ ଦୌଡ଼ିଯାଏ,
ଠେକୁଆଟି କେଉଁଆଡ଼େ ଚାଲିଯାଏ,
ଧରାଦିଏ ନାହିଁ ।

ଘାସ ଦେହରୁ ଶୈଶବର କାକର ଖସିପଡ଼ିବା ପରେ ବି
ତାର ବୟସ୍କ ରୁକ୍ଷତା ସତ୍ତ୍ୱେ
ମୁଁ ତ ସେପରି ଦୌଡ଼ୁଥାଏ,
କିନ୍ତୁ ଆକାଶରୁ ଯେତେବେଳେ
ରକ୍ତ ଝରେ ମଧ୍ୟାହ୍ନରେ ।
ଆଖି ଓ ମୁହଁରେ ମୋର ଲାଗିଯାଏ ରକ୍ତଛିଟା
ଆଶଙ୍କାରେ ବାରମ୍ବାର ଚାହୁଁଥାଏ
ପାଦ ଦୁଇଟିକୁ
ଆଗରେ ଦୁର୍ଗମ ପାହାଡ଼, ହିଂସ୍ରବଣ,
ଉଦ୍ଧତ ନଦୀର ଗୁରୁ ଗର୍ଜନ
ସେତେବେଳେ ତମ କଥା ଖୁବ୍ ବେଶି
ମନେପଡ଼େ ପ୍ରଭୁ !

ତମେ ହେଲେ ବିରାଟ ରାଜହଂସଟିଏ ହୋଇ ଆସନ୍ତ
ମୁଁ ବିକଟାଳ ଶବ୍ଦଟାଏ ଶୁଣିବା କ୍ଷଣି

ହଂସ ଛୁଆ ପରି ତମ ଡେଣା ଭିତରେ
ପଶିଯାଆନ୍ତି
କ୍ଷଣକେ ଭୁଲିଯାଆନ୍ତି
ପାହାଡ଼ର ବଜ୍ରମୁଷ୍ଟି, ବଣର ହିସ୍ର ଗୁହାଣି,
ନଦୀର ସମସ୍ତ କ୍ରୋଧ ।

ତମେ ପ୍ରଭୁ ହଠାତ୍ ଉତ୍ତାଳ ସମୁଦ୍ର ଲହଡ଼ି ଭିତରେ
ନିରାସକ୍ତ ଡଙ୍ଗାଟିଏ ପରି ଭସିଆସ
ମୋ ନିକଟକୁ ।

ଅଥଚ ମୋ ହାତ ପାଏ ନାହିଁ ଡଙ୍ଗାକୁ
ମୁଁ ଅସହାୟ ଶାମୁକାଟିଏ ପରି
ଭାସି ଆସି କୂଳରେ ମୁଣ୍ଡପିଟେ ।

ମୁଁ ସେତେବେଳେ ଆହତ ପବନର ସ୍ୱରରେ
ତମର କାନ୍ଦଣା ଶୁଣିପାରେ ପ୍ରଭୁ,
ଶୁଣିପାରେ ।

କିନ୍ତୁ
ତମେ କଣ ଜାଣନା ପ୍ରଭୁ
ଉପାୟ ମୋର ନାହିଁ ବୋଲି ମୁଁ ଏମିତି ଅନ୍ୟମନସ୍କ ।

## ।। ପକ୍ଷୀମାନେ କାନ୍ଦୁଥିବେ ।।

ପକ୍ଷୀମାନେ କାନ୍ଦୁଥିବେ ଏବଂ କାନ୍ଦୁଥିବେ
ବିଦାୟ ବେଳରି ଲୁହ ଓଦା କରେ ରାସ୍ତାସାରା,
ସ୍ତିମିତ ସର୍ଯ୍ୟାସ୍ତ, ଅକସ୍ମାତ୍ ମଧ୍ୟାହ୍ନର ଆକାଶରେ,
ବର୍ଷାର ପ୍ରଚଣ୍ଡ ଶକ୍ତି,
ଗୋଡ଼ ହାତ ପିଟି ପିଟି ପହଁରିଲା ବେଳେ
ଆକାଶ ଚିତ୍କାର କରେ, ବ୍ୟସ୍ତ ଓ ବିବ୍ରତ,
ସବୁ କ୍ଷତ ଏତେ ଶୀଘ୍ର ଶୁଖିବାର ନୁହେଁ,
ପାଖାପାଖି ଦୌଡୁଥିବେ, ପକ୍ଷୀମାନେ କେତେ ବେଶି
ଅନାତ୍ମୀୟ ଭାବ, ପକ୍ଷୀମାନଙ୍କର ବର୍ତ୍ତମାନ,
କିଛି ଆଉ ଶୁଭେ ନାହିଁ ନିଜର ଚିତ୍କାର ଛଡ଼ା,
ତ୍ରସ୍ତ, ସଂକୁଚିତ ।

ଏକୁଟିଆ ଲୋକଟିଏ ଏଣେତେଣେ ଘୁରି ଘୁରି
କଣ ଖୋଜି ବୁଲୁଥାଏ,
କପାଳର ପ୍ରତିଟି ରେଖାରେ ତାର
ଫୁଟି ଉଠୁଥିବା କ୍ରୋଧ, ଅସହିଷ୍ଣୁ ଭାବ
କେତେ ବେଶି ଦେଖାଯାଏ କରୁଣ କରୁଣ
ଯେଉଁମାନେ ବାଧ୍ୟ ହୋଇ ଗ୍ଲଲିଗଲେ
ସେମାନଙ୍କ କାମ ସବୁ ସଂପୂର୍ଣ୍ଣ ନ ହେଉ,
ସେମାନେ ଫେରିବେ ନାହିଁ, ଆଖିରେ ବିଜୟୀ ଭାବ,
ତୁମେ ଦେଇଥିବା ଦାନ ଫେରାଇ ଦେଉଚୁ ଆମେ
ନିଶ୍ଚିନ୍ତରେ ବସିଥାଅ ଗୃହିଁ ଗୃହିଁ
ଆମେ ସବୁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ,
ଆଉ ଆମ ଭିକ୍ଷା ଲୋଡ଼ା ନାହିଁ ।

ଜଣେ ଅନ୍ୟ ନିକଟରେ କୃପାପ୍ରାର୍ଥୀ ହୋଇ
ଠିଆହେବ, ଦିନେ ନା ଦିନେ ନିଶ୍ଚୟ,
ଏପରି କି ସବୁ ସମୟରେ
ଏତେବେଳେ
ପକ୍ଷୀଙ୍କର ତ୍ରସ୍ତ ଏବଂ ଅନାତ୍ମୀୟ ଭାବ ମନେ ପଡ଼େ,
କିଏ·ବା ନିଜକୁ ଖୋଜି ପାଇନାହିଁ
ଅନ୍ୟ ଦ୍ୱାରେ,
ଶୁଣି ନାହିଁ, ଅଧୈର୍ଯ୍ୟ ହୋଇ ନିଜର
ପ୍ରତ୍ୟାଖ୍ୟାତ କରୁଣ ପ୍ରାର୍ଥନା ।

ଆଉ କିବା ପ୍ରୟୋଜନ ପୂରୁଣା ଛବିରେ
ସକାଳର କୋମଳ ପବନ,
କାକରର ଛୋଟ ଛୋଟ ମୁକ୍ତା ବିନ୍ଦୁ
ସୂର୍ଯ୍ୟର ନୂତନ ରଙ୍ଗ, କେତେ ଲୋଭନୀୟ
ସ୍ନାନ କରି ଉପରକୁ ଉଠିଆସି
ପଛକୁ ଫେରି ଚାହିଁବା ଦରକାର ନାହିଁ ।

ଆଖି ବୁଜି ହୋଇଯାଏ, ଅସଂଖ୍ୟ କଳା କୁଣ୍ଡଳୀ
ଗୋଟିଏ ପରେ ଗୋଟିଏ
ପକ୍ଷୀଙ୍କର ତ୍ରସ୍ତ ରୂପ ଠାରୁ
ମୋର କ୍ରମ ସଂକୁଚିତ ରୂପ ବହୁତ ଦୂରେଇ ଯାଏ,
ଦିଶେ ଭୟଙ୍କର
ପକ୍ଷୀମାନେ କାନ୍ଦୁଥିବେ ଏବଂ କାନ୍ଦୁଥିବେ
କାନ୍ଦଣାର କରୁଣ ମଧୁର ଧ୍ୱନି
ଫଳଟିଏ ହୋଇଯାଉ ଅଲଭ୍ୟ, ପବିତ୍ର
ଏବଂ ଝୁଲୁଥାଉ
ଏକାନ୍ତ ଅସ୍ପଷ୍ଟ ହୋଇ ଯଥେଷ୍ଟ ଉଚ୍ଚରେ ।।

## ।। ଅନ୍ଧ ଓ ଅନ୍ଧକାର ।।

ଅସଂଖ୍ୟ କଳରୋଳର ଅନ୍ଧକାରକୁ ପାରିହେବା ଲାଗି
ଚେଷ୍ଟା କରିବା ଭିତରେ
ପ୍ରତିଦିନର ଚିହ୍ନା ରାସ୍ତାଟିକୁ ଯେ ମୁଁ ହଜାଇ ବସୁଥିଲି ।
ରାସ୍ତା ଦାଢ଼ର ନିସ୍ତବ୍ଧ ଏକାକୀ ବିଜୁଳି ବତୀଟି
କେତେ ଆଶ୍ୱାସନା ଦେଉଥିଲା ମୋତେ,
ମୁଁ ଯେତେବେଳେ ସାରାରାତି ଝିପ୍‌ଝିପ୍ ବର୍ଷାରେ ଭିଜୁଥିଲି
ମୋ ଦୁଃଖକୁ ମାନିନେବା ଭିତରେ
ଭୂଇଁରେ ଜ୍ୟାମିତିକ ଗାର କାଟି
ଈଶ୍ୱରଙ୍କ ଅର୍ଥ କିଛି କିଛି ପାଇ ଯାଉଥିଲି ।।

ଅଥଚ ଆଜି ତମ ଆଖିର ସ୍ୱଚ୍ଛ ଦର୍ପଣ ଭିତରେ
ମୋ ନିଜକୁ ଆବିଷ୍କାର କରିବା ପାଇଁ
ପାହାଡ଼ ଉପରୁ ନିର୍ବୋଧ ପଥର ପରି
ଗଡ଼ି ଆସିଲି କେଉଁ ଏକ ଆଦିମ ଆବେଗରେ ।
ସମସ୍ତେ ଭାବିଲେ ମୋ ଚକ୍ଷୁର ତାରା ଦୁଇଟି
ଉଜ୍ଜ୍ୱଳ ହୋଇ ଉଠିଛି ।
ଦୂରରେ ଲଣ୍ଡା ବରଗଛ ପରି ଠିଆ ହୋଇଛି
ଅସହାୟ ଅନ୍ଧକାର ।।

କିନ୍ତୁ କେମିତି କାହାକୁ ମୁଁ ବୁଝେଇବି ଯେ
ମୁଁ ଆହୁରି ବେଶି ଅନ୍ଧ ହୋଇ ଯାଇଛି ।
ବାରମ୍ବାର ଅନ୍ୟ ମଣିଷ ହେବାକୁ ଚେଷ୍ଟା କରିବି
ମୁଁ ହୋଇ ପାରୁନି ଅନ୍ୟ ମଣିଷ ।
ତୁମ ସହିତ ଏକାତ୍ମ ହେବା ଭିତରେ
ମୁଁ ଯେ ଜଳ ଭଉଁରି ଭଳି କେଉଁ ଅତଳକୁ ଗଳି ଯାଉଛି
ଅନିଚ୍ଛା ସତ୍ତ୍ୱେ ଟାଣି ନେଇ ମୋର ସମସ୍ତ ନିରର୍ଥକ ଅଭିମାନ ।।

## ।। ପିଲାଟି ।।

ଏଇ ପିଲାଟିର ମୁହଁକୁ ଟିକିଏ ଚାହିଁଲ ?
ଭାବି ପାରୁଚ ଇଏ କ୍ରୋଧ କରି ପାରେ ବୋଲି ?
କିନ୍ତୁ ତୁମେ କେବେ ତାର ପର୍ଶୁରାମ ମୂର୍ତ୍ତି ଦେଖିଚ ?
କ୍ରୋଧରେ ଥରୁଥାଏ ଯେତେବେଳେ ତାର ସାରା ଶରୀର ।

ଥରେ ରାଗିଲେ ତାକୁ ଆଉ
ସମ୍ଭାଳେ କିଏ ?
ପାହାଡ଼କୁ ଠେଙ୍ଗାରେ ପିଟି
ଖଣ୍ଡ ଖଣ୍ଡ କରି ଫୋପାଡ଼ି ଦେବାକୁ ଚାହେଁ ।

ବର ଗଛର ମୋଟା ମୋଟା ଡାଳକୁ
ଭାଙ୍ଗି ଦେବାକୁ ଦୁଇହାତ ବଢ଼ାଏ ।

ବହୁ ପାଦ ଚିହ୍ନ ପଡ଼ି ତିଆରି ହୋଇଥିବା ରାସ୍ତାକୁ
ଲିଭାଇ ଦେବାକୁ ଚେଷ୍ଟାକରେ ।

ବିରାଟ ଖୋଲା ପଡ଼ିଆକୁ ହାଣି ମାରି
ଅସମାନ କରି ଦେବାକୁ ଭାବେ ।

ଆଉ ଥରେ ତା ମୁହଁକୁ ଚାହଁତ
କରେଣ୍ଟ୍ ବନ୍ଦ ହୋଇ ଯାଉଥିବା ବିଜୁଳି ପଙ୍ଖା ଭଳି
ବିବର୍ଣ୍ଣ ହୋଇ ଯାଉଚି ତାର ମୁହଁ
କେଡ଼େ ଅସହାୟ,
କେଡ଼େ ଦୟନୀୟ
ମନେ ହେଉଚି ସତେ ପିଲାଟି
ତାର ରାଗିବା ମୁହୂର୍ତ୍ତରେ ।।

॥ ଚିତ୍ର ॥

ମନେଅଛି
ତମେ ଦିନେ କହିଥିଲ ଆଙ୍କିବାକୁ ମୋର ଚିତ୍ରଟିଏ
ଆହୁରି ସୁନ୍ଦର କରି ମୋ ରୂପକୁ ଛବିରେ ରଖିବ ଧରି
ଭୁଲିଯିବା ପାଇଁ ମୋର କ୍ରୋଧଭରା ବିଭତ୍ସ ରୂପକୁ,
ମୁଁ କେଉଁଠି ଦେଖିବାକୁ ଅପୂର୍ବ ସୁନ୍ଦର
ଯେତେବେଳେ ମୋ ମୁହଁରେ ଲାଗି ରହେ
ଧାରେ ସରୁ ହସ,
ଆଖି ଦୁଇ ଭୋର୍‌ର ଫୁଲ ପରି କଥା କହୁଥାଏ ॥

ଆଜି କିନ୍ତୁ ଥରେ ମୋତେ ଦେଖିଯାଅ
ମୁଁ ଏକାକୀ ଏଇଠାରେ
ନିର୍ଜନ ବଣର ଏକ ଝରଣା କୂଳରେ
ପାହାଡ଼ ଉପରୁ ଶୁଭେ ଛଳ ଛଳ ଶବ୍ଦ ଖାଲି
ଆଉ କିଛି ନାଇଁ,
ପାଣିରେ ମୁଁ ଦେଖୁଅଛି ମୁହଁ ମୋର
କ୍ରୋଧ ଅନ୍ତେ କରୁଣ କରୁଣ
ପୋଡ଼ି ଯାଇଥିବା ଥୁଣ୍ଟା ଗଛଟି ସମାନ ॥

ମନେ ପଡ଼େ ତେଣୁ ତମ ଚିତ୍ରକଥା
ଯାହା ତୁମେ ଚେଷ୍ଟା କରି ଶେଷଯାଏଁ
ଆଙ୍କି ପାରିଲନି ॥

୨

## ।। ରୂପାନ୍ତର ।।

ବର୍ଷା ପୂର୍ବରୁ;
ମେଘ ଦେଖି ମନେ ପଡ଼ିଲା
ମୋ ମାଆର ସଜଳ ମୁହଁ
ମୋ ପାଇଁ ଆଶଙ୍କାରେ ଭରି ଉଠିଚି;
ଆଉ କିଛି ସମୟ ପରେ
ତା ଆଖିରୁ ଝରି ଆସିବ
ଲୁହ ! ସେ ସବୁ ଆଶୀର୍ବାଦ
ମୋ ପାଇଁ ।।

ବର୍ଷା ଆରମ୍ଭ ହେବା ପରେ
ଛାତ ଉପରେ ଚଢ଼େଇମାନେ ନାଚୁଛନ୍ତି
ଥଣ୍ଟରେ ଥଣ୍ଟ ଘଷି ଶବ୍ଦ କରୁଛନ୍ତି ।
ବେଶ୍ ସୁନ୍ଦର, ସୁନ୍ଦର ଅନ୍ଧକାରର ଘର
ବାହାରେ ବର୍ଷା ଝରୁଚି, ଝରୁଚି
ବର୍ତ୍ତମାନ ଚଢ଼େଇମାନେ କ୍ରମଶଃ
ହିଂସ୍ର ହୋଇ ଉଠୁଛନ୍ତି ।
ସେମାନେ ରକ୍ତାକ୍ତ ହେଲେଣି ।।

ବର୍ଷା ଶେଷ ହେଲା
ଆଶୀର୍ବାଦର ଫୁଲ ସବୁ ଝରି ଯାଇଚି;
ଥୁଣ୍ଟା ଗଛରେ ଝୁଲୁଚି ମୋ ମାଆର ଶବ ।।

## ।। ଦ୍ୱିତୀୟ ସନ୍ଧ୍ୟା ।।

ଅର୍ଥହୀନ କୋଳାହଳ ସମଗ୍ର ଦିନର
ଇତିହାସ ପାଲଟିବ,
ପ୍ରତୀକ୍ଷିତ ସନ୍ଧ୍ୟା ଗ୍ଲିଯିବ ।
ଟେବୁଲର ବହି ସବୁ ଇତସ୍ତତଃ,
ଚୌକିର ଉଷ୍ଣତା କ୍ରମେ ଥଣ୍ଡା ହୋଇଯିବ ।
ନିକଟରେ ଶୁଭୁଥିବା ପାଦଶବ୍ଦ
ତମରି ଚଷମା କାଚେ ମିଶିଯିବ,
ଦେଖାଯିବ ମୁହଁ ତମ ଅସହାୟ
ଚଷମାଟି ଖୋଲିଦେବା ପରେ ।।

ଦ୍ୱିତୀୟ ସନ୍ଧ୍ୟାରେ ପୁଣି
ଏଣେ ତେଣେ ଗ୍ହିଁ ଗ୍ହିଁ
ବୁଲୁଥିବ ଶୂନ୍ୟ ବାରଣ୍ଡାରେ
ବେଶ ବାସ ଅବିନ୍ୟସ୍ତ
ଆଙ୍ଗୁଠିରେ ଖାଲି କାଳି ଦାଗ,
ଅକସ୍ମାତ୍ ପହଞ୍ଚିବି,
ତମରି ବିସ୍ମିତ ମୂର୍ତ୍ତି ଦେଖିବାକୁ
ଅନ୍ଧକାର କୋଠରୀର ଝର୍କା ଖୋଲି
ତାରା ଭର୍ତ୍ତି ଉଜ୍ଜଳ ଆକାଶ ।

## ।। ଦର୍ପଣ ।।

ମୋ' କାଚର ଦର୍ପଣରେ ପ୍ରତିବିମ୍ବିତ ମୋର ମୁହଁ
ଏକ ଜଘନ୍ୟ ଆତତାୟୀର ।

ପ୍ରଚଣ୍ଡ ପ୍ରତିହିଂସାରେ ଜଳୁଛି ମୋର ହୃଦୟ
ମୁଁ ରକ୍ତାକ୍ତ କରିବି ସେ ମୁହଁକୁ ।

ଅଥଚ ଉଦ୍ୟତ ଖଣ୍ଡା
ନଇଁ ଆସୁଛି ମାଟି ଉପରକୁ ବାରମ୍ବାର ।

ଶ୍ମଶାନର ପୋଡ଼ା ଭୂଇଁରେ
ଗୁଳ୍ମ ଲତାର ଶ୍ୟାମଳ ସମାରୋହ ।

ତମର ସମସ୍ତ ବିଶ୍ୱାସ ଓ ଅନୁରକ୍ତି
ମୋର ନିଃଶ୍ୱାସରେ
ସମଗ୍ର ଦର୍ପଣକୁ ଧୂଆଁଳିଆ କରୁଛି ।

ମୋର ଘୃଣିତ ମୁହଁର ପ୍ରତିବିମ୍ବ ଯେ
ଅଦୃଶ୍ୟ ହୋଇ ଯାଉଛି !
ମୋତେ ବଞ୍ଚିବାକୁ ଦିଅ, ବଞ୍ଚିବାକୁ ଦିଅ ।।

## ।। ନିରୁଦ୍ଦେଶ ।।

ଯେତେବେଳେ ସେ ଲୋକଟି ଚାଲିଗଲା ରାତି ଅଧେ
ଧୀରେ ଧୀରେ ଦ୍ୱାର ଖୋଲି ପାଦ ଚିପି ଚିପି
କେମିତି ଜାଣିଲ ନାହିଁ ?
ଏତେ ବେଶି ଗାଢ଼ ନିଦ,
ଶୋଇଗଲେ ଭୁଲିଯାଅ ସାରା ଦୁନିଆକୁ ?

ଏକୁଟିଆ ଗଛଟିଏ
କେଉଁଠାରେ ଠିଆ ହୋଇ ବିଞ୍ଚିହୁଏ, ଗରମରେ ଛଟପଟ ହୁଏ,
ପତ୍ରସବୁ ଏଣେ ତେଣେ ପଡ଼ିଥାନ୍ତି କ୍ଳାନ୍ତ ହୋଇ
ଆଗ୍ରହ ନ ଥାଏ ଟିକେ ଦେବା ଲାଗି ସେମାନଙ୍କ ଆଉ ପରିଚୟ,
ଏବୁ ଭାବିବା ଲାଗି ନାହିଁ ଟିକେ ଅବସର
ଦିନସାରା ହାରିବାର ଆଶଙ୍କାରେ ଏଣେ ତେଣେ ଦୌଡ଼ୁଥାଅ,
ଚିଠି ସବୁ ବାଣ୍ଟି ସାରି ପୋଷ୍ଟମ୍ୟାନ ପରି
ଏକା ଏକା ଫେରୁଥାଅ ଗୃହିଁ ଗୃହିଁ
ରାସ୍ତାରେ ବ୍ୟସ୍ତ ବିବ୍ରତ ଗାଡ଼ି ଓ ଲୋକଙ୍କୁ ।
ତମର ଠିକଣା କିଏ ପଚ୍ଚରିଚି ?
କେବେ ଥରେ ପଚ୍ଚରିଚି କେହି ?

କାହାକୁ ନ କହି କିଏ ଚ୍ଚଲିଗଲା,
କେଉଁଠାରେ ନିରୁଦ୍ଦିଷ୍ଟ ହେଲା;
କାହାକୁ ଚିହ୍ନିଚି କିଏ ?
ତାକୁ ତମେ ଚିହ୍ନିଚ କି ? ଏଇବାଟେ ଗଲା,
ଦ୍ୱାର ଟିକେ ଖୋଲିବ କି ?
କରାଘାତ କରି କରି କ୍ଳାନ୍ତ ହୁଅ, ଖୋଲିବନି ଦ୍ୱାର
ତା ପରି ସମସ୍ତେ ମୂକ, ସମସ୍ତେ ନିଷ୍ଠୁର

ସେମାନେ କୁଆଡ଼େ ସବୁ ଯାଉଛନ୍ତି, କେତେବାଟ
କେଉଁଠାରେ ସେମାନଙ୍କ ପହଞ୍ଚିବା ଜାଗା ?
ବିଶ୍ୱାସ କେମିତି କିଏ କରିବ ଯେ
ସେମାନେ ଗୋଟିଏ ସ୍ଥାନେ ଆସି ପହଞ୍ଚିବେ,
କିଏ ଜ୍ଞାତି, କିଏ ବନ୍ଧୁ, କିଏ ନିଜ ପରିବାର ଲୋକ,
କା ସହିତ କି ସମ୍ପର୍କ ସବୁ ଜାଣିନେବେ ।

କିଏ ଏଠା ଅଧିବାସୀ, କିମ୍ବା ସବୁ ବାହାରର ଲୋକ,
ହୁଏତ ଖୋଜି ପାରନ୍ତି ସେମାନେ ବହୁତ,
କାହାକୁ ଖୋଜିବେ ?
ଖୋଜିବାର ଅର୍ଥ କିଛି ଜଣାନାହିଁ ସେମାନଙ୍କୁ ।
କ୍ରମେ କ୍ରମେ ରାତି ତାର ସମସ୍ତ ଅବସନ୍ନତା
ନେଇ ଆସିଯିବ,
ନିଜର ଏକକ ସତ୍ତା ଅନୁଭବ କରି କରି ନିଦ୍ରା ଯିବେ,
ସୂର୍ଯ୍ୟାଲୋକ ଅଭାବରେ ନିଅନ ଆଲୁଅ ଦେଖା
ସମ୍ମୋହିତ ଅବସ୍ଥାଟା ପୂରା କଟିଯିବ ।।

## ।। ଅପରିଚିତ ।।

ସତେ ସତେ କେତେ ବଡ଼ ନିର୍ବୋଧରେ !
ତୁ କାହିଁକି ଭାବୁଥିଲୁ ଅନ୍ଧାର ଯେତେ ନିବିଡ଼
ହେଉ ପଛେ, ତୁ ସେମିତି ତାରା ଭଳି ହସି ହସି
ଲୋଟି ଯାଉଥିବୁ ଏବଂ ଅନ୍ୟମାନେ ତୋତେ ଦେଖି
ଈର୍ଷାନ୍ୱିତ ହେଉଥିବେ, ତୋ ସାଙ୍ଗରେ
କଥାବାର୍ତ୍ତା କରିବାକୁ ଲାଳାୟିତ ହେବେ ।।

ଦିନସାରା ଘୋ ଘୋ ନଈଘାଟ,
କାହା ସୁବିଧାରେ କିଏ ଗାଧୋଇ ଚାଲି ଯାଆନ୍ତି
ଶେଷ ହୁଏ କେତେବେଳେ ଦେବତା ଦର୍ଶନ
ତୋ କଥା ବା କିଏ ଏଠି ପଚାରିବ କାହାକୁରେ
ତୁ ବା କିଏ ? ବୁଡ଼ି ରହିଥିବା ଖଣ୍ଡେ
ଶିଉଳି ଲଗା ପଥର ପାଣିର ଭିତରେ ।।

ତୁ ନିଜେ ପାରୁନୁ ଜାଣି କେତେବେଳେ
ପଙ୍ଗୁ ତୁ ଗଲୁଣି ହୋଇ
ଗୁଳିବିଦ୍ଧ ଉଡ଼ନ୍ତା ପକ୍ଷୀଟେ ଅବା ହଠାତ୍
କରେଣ୍ଟ ବନ୍ଦ ବିଜୁଳି ପଙ୍ଖାଟେ,
ଡେଣା ତୋର କେତେବେଳେ ସ୍ଥିର ହୋଇ ସାରିଲାଣି
ଅଥଚ ତ ମନେ ମନେ ଭାବୁଥିଲୁ
ଶବ୍ଦ କରି ରାସ୍ତାରେ ଚାଲିବା ଲାଗି
ତୋର ଯେତେ ଚେଷ୍ଟା ସବୁ ସେଇମିତି ଅନାହତ ଅଛି ।।

ବୁଡ଼ି ଯାଉଥିବା ବେଳେ କାହାକୁ ତୁ ହାତ ଧରି
ଉପରକୁ ଉଠାଇ ଆଣିଲୁ ବୋଲି,
ତୁ ନିଜକୁ ଭାବି ନେଲୁ କିମ୍ପାଇ ଈଶ୍ୱର ।

ତୋ ତୋଟାର ଗଛ ସବୁ ବତାସରେ ଯଦି ଆଜି
ଲୋଟିଗଲେ, ସେ କାହିଁକି ଆସିବରେ
ପୁରୁଣା ଦିନର ଆଉ ସଂପର୍କର ଖିଅ ଧରି
ଦେବାପାଇଁ ମିଥ୍ୟା ଆଶ୍ୱାସନା ।।

ତୁ ତ ଏକା, ଖାଁ ଖାଁ ଗହୀରରେ
ଲମ୍ବାଲମ୍ବା ଗ୍ରିଆଢ଼େ ଭାଡ଼ିଟିଏ ପରି ଛିଡ଼ା
ଫସଲ କଟା ଶେଷରେ, କାହାକୁ ତୁ
ରାତିଦିନ ଖୋଜି ମରୁଚୁରେ ?
କାହାର ସମୟ ଅଛି ଆଜିକାଲି
ଗୀତ ଗାଇବାକୁ ତୋର ଗ୍ରିପଟେ ଘୂରି ।।

## ।। ନିର୍ଦ୍ଦେଶକ ।।

ନିର୍ଜନ ଗାଧୁଆତୁଠ, କାଁ ଭାଁ କର୍କି ଆଉ ପ୍ରଜାପତି
ଛୋଟ ଛୋଟ ତରଙ୍ଗ ସାଥୀରେ
ମାଛଙ୍କର ଲୁଚକାଳି ଖେଳ ଛଡ଼ା
କଣ ଆଉ ବେଶି ଦେଖି ହେବ,
ଉଦାସ ପବନ ଦେହେ ପ୍ରତିକ୍ରିୟା କିଛି ନାହିଁ
ଏକା ଏକା ବସି ବସି ଉପରକୁ ପାଣି ଫୋପାଡ଼ିବା ଶବ୍ଦ
ଅଳ୍ପ କ୍ଷଣ ପରେ ପୁଣି
କେଉଁଠାରେ ହଜି ଯାଇଥିବ ।।

କିଏ ଆଉ ଖୋଜିବାକୁ ଆସିବ ଯେ
କେହି ଜଣେ ଥରେ ହେଲେ
ଭୁଲରେ ବି ଭାବିବେନି
ମୁଁ ଏଠାରେ କେତେବେଳୁ ବସିଅଛି
ଅଭିମାନ କରି
କେହି ପ୍ରସ୍ତୁତ ନୁହନ୍ତି ନିର୍ଦ୍ଦେଶ ମାନିବା ଲାଗି
ଶେଷବେଳେ ନିର୍ଦ୍ଦେଶର କଣ ଦରକାର,
ମଞ୍ଚ ଛୋଟ ହୋଇଯାଏ, ଆଲୋକର ଅଭାବରୁ
ଝାଳ ସଙ୍ଗେ ଅଧେ ରଙ୍ଗ ମୁହଁରୁ
ପଡୁଚି ଝରି
ସଂଳାପର ଶେଷ ଅଂଶ ମନେ ପଡୁନାହିଁ
ତଥାପି ବିରାମ ନାହିଁ
ଅଭିନୟ ଚାଲିଥିବ ଏବେ ପୂର୍ବ ପରି ।।

ଛୋଟ ଛୋଟ ପିଲାମାନେ
ସବୁଦିନେ ଛୋଟ ହୋଇ ରହନ୍ତେ କି
ମୋ ପାଖରେ ବାରମ୍ବାର ଅଳି କରୁଥାନ୍ତେ
ସେମାନଙ୍କ ଦେହରୁ ଧୂଳି ଝାଡ଼ନ୍ତି
ଓ ଶିଖାନ୍ତି ମନଇଛା ପ୍ରାର୍ଥନା ସଙ୍ଗୀତ
ରାସ୍ତା ବାଢ଼େ ଫୁଟିଥିବା
ଅନାମିକା ସୁନ୍ଦର ଫୁଲଟେ ଦେଖି
ବୃନ୍ତ ଚ୍ୟୁତ କରିବାକୁ
ସେମାନଙ୍କ ପ୍ରସାରିତ ହାତ,
ଅକସ୍ମାତ୍ ଆନନ୍ଦର ବେଦନାରେ
ଆଖି ଦୁଇ ଛଳ ଛଳ,
କେଉଁ ବିଶେଷ ମୁଦ୍ରାରେ
ପ୍ରମାଣ କରିବା ଲାଗି
କ୍ରମେ ହୋଇଯାନ୍ତେ ସଂକୁଚିତ ।।

## ।। ସେ ଆସିବେ ନାହିଁ ।।

ଇଏ ତ ଆମ
ସାମ୍‌ନା ଘର ଗେଟ୍ ଖୋଲିବା ଶବ୍ଦ
ତୁମେ ଏମିତି ଚମକି ଉଠିଲ କିଆଁ ?
ସେ ଆସିବେ ନାହିଁ କେବେ
ବିଶ୍ୱାସ ମୋ ନାହିଁ
ନ ଦେଲେ ଯଦି ଅତିଥି ଆସି
କ୍ଷଣକ ଲାଗି ଇନ୍ଦ୍ରପଦ
ଦୁଃଖ କାହିଁ ପାଇଁ ?
ଦେଖିଲ ଆମ ବଗିଚ୍ଚର ଅରମା ଏକ କୋଣେ
ପଳାସ ଗଛୁ ଫୁଲ ଝଡ଼ୁଛି
କେବେ କେମିତି ଗୋଟି ଗୋଟି ହୋଇ ।

ମୁଁ ଯାଉଚି ବାହାରକୁ
ଫେରିବା ଡେରି ହେବ,
ସେଇ ଯେ ସାର୍ଟ ବୋତାମ ଛିଣ୍ଡା
ଲଗାଇ ଦେବ ବୋତାମ ତକ
ଏକା ବସି ବସି ।।

## ।। ଶତ୍ରୁ ।।

ମୁଁ ବଂଶୀ ବଜାଇବା ବେଳେ
ସେ ମୋତେ ଅନ୍ଧକଲା ଇର୍ଷାରେ ।

ଶିଉଳି ଲଗା ପ୍ରାଚୀରଠାରୁ
ଧୈର୍ଯ୍ୟ ମୋର ଅନେକ ବେଶି ହେଲେ ବି
ମୁଁ ଏକ ରାତ୍ରିର ଶବ୍ଦମୟ ଅରଣ୍ୟ
ଭାଙ୍ଗି ଯିବାର ସୌରଭ ମୋ ଦେହରେ ।

ମୁଁ ଜଳପାନ କରି ଗୁହିଁଚି
ସେ ସେମିତି ତୃଷାର୍ତ୍ତ
ଭୟର ପ୍ରଚଣ୍ଡ ମଧ୍ୟାହ୍ନରେ
ତାର ଉଦାସ ଛାଇ,
ଗର୍ବ ମୋର ଭାଙ୍ଗି ପଡ଼େ
ଅନ୍ୱେଷଣ କେତେ ମୂଲ୍ୟହୀନ
ନଦୀର ପ୍ରବାହ ଭିତରେ
ଏବଂ
ନଦୀର ପ୍ରବାହ ବନ୍ଦ ହୋଇଯିବା ପରେ ମଧ୍ୟ
ତାର ଅଭିବ୍ୟକ୍ତିହୀନ ମୁହଁ
ବାରମ୍ବାର ଭାସି ଉଠିଚି ପାଣିରେ ।

ତେଣୁ
ସେ ମୋର ପ୍ରିୟତମ
ସେ ମୋର ଅନ୍ତରତମ ।

## ।। ହାତ ।।

ଆଲୋକରେ ଲମ୍ବିଆସେ
ଯେତେବେଳେ
ତମରି ହାତ
ମୋ ପାଇଁ ଟୋଳିଦିଏ
ଚମତ୍କାର ନିରୋଳା କୋଠରୀ,
ନିରାପଦ ବିଳାସରେ
ଆଖି ମୋର ବନ୍ଦ ହୋଇଯାଏ ।

ଅନ୍ଧକାର
ଭିତରେ ତମରି ହାତ
ସୃଷ୍ଟିକରେ ଅରଣ୍ୟର ମାୟା,
ଶୁଣାଯାଏ ପ୍ରଥମରେ
ପକ୍ଷୀର ମଧୁ କୂଜନ,
କ୍ରମେ ହିଂସ୍ର ହୁଏ,
ସେ ହାତରେ ଉତ୍ତେଜିତ
ସଂଖ୍ୟାହୀନ କୋମଳ ହାତର ସ୍ପର୍ଶ
ମୋତେ କରେ ଖୁବ୍ ଭୀତତ୍ରସ୍ତ,
ମୁଁ କାଳେ ବନ୍ଦୀ ହୋଇ ରହିଯିବି
କେଉଁ ଏକ ନିଷିଦ୍ଧ ନଗରେ,
ଆଶ୍ରୟ ସ୍ଥଳଟି ମୋର ଜଳୁଥିବ
ଦୂରେ ବହୁ ଦୂରେ ।।

## ।। ପ୍ରତୀକ୍ଷା ।।

ମୁଁ ଯୁକ୍ତି କରିବି ପ୍ରଭୁ, କାହା ସଙ୍ଗେ
ଯେତେବେଳେ ଯୁକ୍ତି ମଣିଷର ସବୁ ନିଜ ପାଇଁ,
ମୁଁ ତ କେତେଥର
ପାହାନ୍ତାରେ କଦଳୀ ପତ୍ର ଉପରେ କାକର ପଡ଼ିଲେ
ବାହାରକୁ ଗ୍ରହିଁଚି ଓ ଦେଖେ କେହି ନାହିଁ,
ଝର୍କାର ରେଲିଂ ଛାଡ଼ି ଫେରିଗଲା ବେଳେ କିନ୍ତୁ
ଶୁଣାଯାଏ ଥର ଥର ସେ କାହାର ସ୍ୱର
ଛାତିରେ ତୀବ୍ର ବେଦନା
ଅନାହୂତ ଭବେ ଆସି ଉଙ୍କି ମାରେ
କାହାକୁ ଡରିଚି ସିଏ,
ଅନୁମତି ନେବାର ବା କଣ ଦରକାର ?
ଘଣ୍ଟା କଣ୍ଟା ଟିକ୍ ଟିକ୍ ଗ୍ଲୁଥାଏ ସେହିପରି,
ଅକସ୍ମାତ୍ ମନେ ହୁଏ
ସେ ସ୍ୱର କେତେ ମଧୁର,
ଶୋଇଥିବା ମଣିଷର ମୁହଁ ପରି ଶାନ୍ତ ଓ କୋମଳ ।।

ମୋର ଏକମାତ୍ର ନିଶା
( ଯାହା ମୁହିଁ କେବେହେଲେ ଛାଡ଼ି ପାରେ ନାହିଁ । )
ଭିତରେ ମୁଁ ପୃଥିବୀକୁ ଭୁଲି ଯାଇଥିଲି
ଭୁଲିଥିଲି ତାର ଦୁଇଟି ଆଖି
ଆନନ୍ଦ ଓ ବେଦନାରେ ଲୁହ ଢଳ ଢଳ
ବହୁଦିନ ହେଲା ମୃତ
କୌଣସି ଆତ୍ମୀୟ ପରି
ମୁହଁ ତାର ଜଣା ପଡ଼େ ଅସ୍ପଷ୍ଟ, ବିଭୋର ।।

ମୋର ସ୍ମୃତି ଫେରି ଆସେ
ପବନର ନିଃଶବ୍ଦ ପାଦ ସଞ୍ଚାର
କ୍ରମଶଃ ନିକଟତର ହୋଇଗଲେ,
ମୁଁ ଚିତ୍କାର କରି ଉଠେ କିଏ କିଏ ?
ନଦୀର ଉଚ୍ଛୁଳା ଜଳ, ଛଳ ଛଳ
ସ୍ପୋଟ୍‌ ହୋଇ ଅର୍ଥପୂର୍ଣ୍ଣ ହୋଇ ଉଠେ
ଅସଂଖ୍ୟ ଅକ୍ଷର ।।

ପେଟ୍ରୋମାକ୍‌ସ ଲାଇଟ୍‌ର ମୁଁ ଦଗ୍‌ଧ ମେଣ୍ଟାଲ୍‌ଟିଏ
ତମରି ଉତ୍ତାପ ଆଉ ଆଲୋକରେ ଜଳି ଥିଲି
କିଛି କ୍ଷଣ ପାଇଁ,
ସେ ଅବା କେତେ ସମୟ,
କେତେବେଳେ ଆସେ ପୁଣି କେତେବେଳେ ଗୁଲିଯାଏ,
ବର୍ତ୍ତମାନ ମୋର ସତ୍ତା କେତେ ବେଶି ଦୟନୀୟ
କେଉଁଦିନ ଝଡ଼ିଯିବି ସଂପୂର୍ଣ୍ଣ ପାଉଁଶ ହୋଇ,
ଏମିତିକା, ତା ପୂର୍ବରୁ
ଉଜ୍ଜ୍ୱଳ ଆଲୋକ ନେଇ
ଆଉ ଥରେ ଜଳିବାକୁ
ରହିଅଛି ଗୁହିଁ ।।

## ॥ ବିରୋଧାଭାସ ॥

ଫୁଲ କେତେବେଳେ ଫୁଟେ,
ଝରିଯାଏ ନୀରବରେ
ସେଥିପାଇଁ କାହାକୁ ବା ଦାୟୀ କରାଯିବ ?
ନ ଘଟିବା ଘଟଣା ହିଁ ସବୁଠାରୁ ବଡ଼ ସତ
ସେ ଆସିବ ସବୁଦିନ
ସଭିଙ୍କର ଅଜଣାରେ, କେତେବେଳେ ଛୁଇଁ ଦେଇ
ସେଇ ପରି ନୂଆ ହୋଇ ପୁଣି ଗ୍ଳଲିଯିବି ॥

କେହି ଦେଖି ପାରନ୍ତି ନି
ମୋ ଦୁଇଟି·କଟା ଡେଣା
ଚଟାଣରେ ଝରିଥିବା ଅଦୃଶ୍ୟ ରକ୍ତକୁ
ବର୍ତ୍ତମାନ ମୁଁ ଯଦିଚ ନିଶ୍ଚିତ ଯେ
ଅନ୍ୟ କିଏ ଗୀତ ଗାଉଥିବା ବେଳେ
ଆବେଗରେ ତା ସହିତ କଣ୍ଠ ମିଳାଇବା
ପାପ ବୋଲି, ଏପର୍ଯ୍ୟନ୍ତ କହିନି କାହାକୁ
ହୁଏତ ମୁକ୍ତି ମିଳନ୍ତା
କାହା ଆଗେ ଥରେ କହିଦେଲେ
କି ନିଷ୍ଠୁର ଘଡ଼ି ମୋର
କଷ୍ଟ ଦେବା ଲାଗି ମୋତେ
ଏତେବେଳେ ଧୀରେ ଧୀରେ ଗ୍ଳଲେ ॥

ଏକା ଏକା ମୁଁ ଆଉ ପାରୁନି ହସି
ଖୁବ୍ ଚିହ୍ନା ମଣିଷ ବି ମନେହୁଏ କେମିତି ଅଚିହ୍ନା
ବସନ୍ତ ଶେଷରେ ଶେଷ କୋଇଲିର ଡାକ
କରୁଣ କରୁଣ ପୁଣି କେତେ ବେଶି ତୀବ୍ର ଓ ମଧୁର
ଏଠାରେ ବିରୋଧାଭାସ,
ଜୋର କରି ତା ମୁହଁରେ ଟାଣି ଦିଏ କିଏ ଆଜି
ବୟସର ଗାର ॥

## ।। କୌଣସି ମହାପୁରୁଷଙ୍କ ପ୍ରତିମୂର୍ତ୍ତି ଉଦ୍ଦେଶ୍ୟରେ ।।

ରାସ୍ତା ଶୁନ୍‌ଶାନ୍ ହେଲେ କି ଦୃଶ୍ୟରେ ତମ ଆଖି ଜଳି ଉଠେ
କଣ ଅବା ବୁଝିପାର ନିର୍ଜନତା ବିଚିତ୍ର ଭାଷାରୁ
କାହାକୁ ଅପେକ୍ଷା କର;
କି ଖବର ଶୁଣିବାକୁ ଏତେ ଉଦ୍‌ବେଳନ
ଶୁଖିଲା ପତ୍ର ଉପରେ ମୃଦୁ ପାଦ ଶବ୍ଦ ପରି
ବିଶ୍ୱାସ ତମର କେତେ ଜଣାଯାଏ ମ୍ଳାନ ଓ କରୁଣ ।

ରାସ୍ତାରେ ପ୍ରବଳ ଭିଡ଼
ଅନ୍ୟକୁ ପଛକୁ ଠେଲି ଜଙ୍ଗଲର ଉଚ୍ଚ ଉଚ୍ଚ ଗଛ ପରି
ଯେଉଁମାନେ ଆଗେ ଚାଲିଗଲେ
ସେମାନଙ୍କ ସମୟର ଏକାନ୍ତ ଅଭାବ ଆଜି
ଖବର ରଖିବା ଲାଗି
ଘାସ ପରି ଛାଇ ତଳେ ଯେଉଁମାନେ ଲୁହ ଗଡ଼ାଇଲେ;
ସବୁତ ଦେଖୁଛ ତମେ ନିର୍ବିକାର, ସୂର୍ଯ୍ୟର ଜ୍ୱଳନ
ଚିତ୍କାର କରିବା ଚେଷ୍ଟା ବ୍ୟର୍ଥ ହୁଏ
କି ଏକ ଅଦ୍ଭୁତ ଭୟ
ପାଟି ଆଉ ଖୋଲେ ନାହିଁ, ସ୍ୱର ଶୁଭେ ନାହିଁ
ଅନ୍ୟମାନଙ୍କ ଉପରେ ଆଶା ରଖି
ବହିର ପୃଷ୍ଠା ଭିତରେ ହଜି ଯାଇଅଛ
କିନ୍ତୁ ହାୟ ଗୋଟିଏ ଅକ୍ଷର ମଧ୍ୟ ପଢ଼ି ପାରନାହିଁ

ସଂଧ୍ୟାର ମଳିନ ଛାଇ ଶୁଖିଲା ଲଣ୍ଡା ଗଛର
ବୟସ ହିସାବ କରେ
ମାଇଲଖୁଣ୍ଟମାନଙ୍କ ଚିହ୍ନ ବର୍ଣ୍ଣ ହଜି ଅଛି
କାହିଁ କେଉଁଠାରେ,
ତମେ ନିଜେ ଜାଣିନାହଁ କଣ ସବୁ ହରାଇଛ
କଣ ଅବା ପାଇଅଛ ହରାଇବା ବେଦନା ଭିତରୁ,
କି ତୃପ୍ତି ସେ ବେଦନାରେ
କେତେ ବଡ଼ ନିଶା ପୁଣି
ନ ପାଇବା ଦୁଃଖ ଯେତେ କହି ବୁଲିବାରେ ।।

ପୃଥିବୀର ଚାରିଆଡ଼େ କିଛି ଆଉ ଘଟୁ ନାହିଁ
କେଉଁଆଡ଼େ କିଛି ନାହିଁ
ସମସ୍ତେ ନିଶ୍ଚଳ, ମୂକ, ମଣିଷ ମଣିଷ
ବିଶ୍ୱାସ ହୁଏନି ଆଜି ଯେଉଁ ସ୍ୱରେ ଯେତିକି ପାରିଛ କହି
ସେ କଣ ତମରି ସ୍ୱର ଏକାନ୍ତ ନିଜସ୍ୱ
କିମ୍ବା ଏକ ଯନ୍ତ୍ରଶାଳା ଦୃଢ଼ ଏବଂ କରୁଣ ନିର୍ଘୋଷ ।।

## ।। ଅଭିଯୋଗ ।।

ସମସ୍ତଙ୍କ ବିରୁଦ୍ଧରେ ଅଭିଯୋଗ
କା' ପାଖରେ ଜଣାଇବି ମୋର ପ୍ରତିକ୍ରିୟା
ବରଂ ଭଲ ଏଇମିତି ଗଳିଯିବା ଲୋକାଳୟ ଛାଡ଼ି
ଅପନ୍ତରା ଦ୍ୱୀପରେ କେଉଁଠି ଶାନ୍ତି ?
ନୂତନ ଜୀବନ ଗଢ଼ି ତୋଳିବାର ପ୍ରେରଣା ଜଗାଇ
ବାରମ୍ବାର ତମେ ମତେ ଧରିଛ ଜାବୋଡ଼ି ।।

କେଉଁଟା ତୁମର ଅଟେ ଅଭିନୟ
କେଉଁଟା ବା ନୁହେଁ ଅଭିନୟ
କେମିତି ଜାଣିବି ଏବେ
ଅଯଥାରେ ଆଶା ଆଉ ଆନନ୍ଦର
ଆଘାତରେ ମୋତେ
ବାରମ୍ବାର କିଆଁ ଏତେ ମାରୁଛ କନ୍ଦାଇ ।।

## ।। ସମ୍ବୋଧନହୀନ ।।

ଚିଠିର ପ୍ରଥମ ଅକ୍ଷର ଲେଖିଲା ବେଳେ
ଏତେ ସଙ୍କୋଚ କାହିଁକି ?
ଖାଲି କାଳି ଛିଟା,
ସାରା ଚିଠିରେ ତମରି ଭାଷା
କେତେ ଲଜ୍ଜାହୀନ ।
ଅଥଚ ଭୁଲି ଯାଇଛ
ପ୍ରଥମେ କିଛି ସମ୍ବୋଧନ କରିବାକୁ,
ନା ଛାଡ଼ିଗଲ ସବୁ ଜାଣିଶୁଣି ।

## ସ୍ୱଗତୋକ୍ତି

କେତେ ନିଖୁଣ ଭାବେ ମୁଁ
ଅଭିନୟ କରି ପାରିଥିଲି
ଦିନେ ରାଜାର ଭୂମିକାରେ
ପୁଣି ଦିନେ ଭିକାରୀର ଭୂମିକାରେ
ଅଥଚ ମୁଁ ରାଜା ନୁହେଁ
କି ଭିକାରୀ ବି ନୁହେଁ ।।

ମୁଁ ତ ଗୋଟାଏ ବ୍ୟକ୍ତିତ୍ୱହୀନ
ନିର୍ବୋଧ ଲୋକ,
ନିର୍ବୋଧ ଛଡ଼ା କିଏ ଆଉ ଅବିକଳ
ନାଟକର ନିର୍ଦ୍ଦେଶକୁ ମାନି ନେଇପାରେ ?

ଟେଲିଫୋନ ସେହିପରି ବାଜୁଥାଉ
ମୋ ଭଳି ଆଉ ଜଣେ ନିର୍ବୋଧ
ଟେଲିଫୋନ୍ କରୁଥିବ ବିନା କାରଣରେ ।

ଏ ଭଳି ତ ଅନେକ ଘଟଣା
ଘଟୁଥିବ ନିତି ଦିନ,
ଅଥଚ, ମୁଁ କାହିଁକି ହଠାତ୍
ଆକର୍ଷଣ ଅନୁଭବ କଲି ତମ ପାଇଁ
ବେହେଲାର ପ୍ରଥମ ସଂଳାପ
ଆଛନ୍ନ କଲା ପରି ହୃଦୟକୁ
ପ୍ରତିଶ୍ରୁତି ଦେଇ
ପ୍ରତିଶ୍ରୁତି ରକ୍ଷା ନ କରିବା ଠାରୁ
ପ୍ରତିଶ୍ରୁତି ନ ଦେବା ହିଁ କେତେ ଭଲ ।

ଫୁଲମାଳର ସୂତା ପରି ସବୁରି ଅଲକ୍ଷ୍ୟରେ
ରହିଯିବା କେତେ ଭଲ ।।

ନ ପାଇବାର
ବିକୃତ ରାଗ ଓ ଯନ୍ତ୍ରଣାରେ
ମୋ ନିଜର ସର୍ବନାଶ କରିବାର
ଅଭିନୟ କରୁଚି ମୁଁ,
ଅଥଚ ମୁଁ ଦେଖି ପାରୁଛି
ତମ ଆଖିରେ
ଲାସ୍‌କଟା ଘରର ଅନ୍ଧକାର ।।

## ।। ନିର୍ଜନତା ।।

ପୁରାତନ ତାଳପତ୍ର ପୋଥି ପରି
ନିର୍ଜନତା ମୋ ଆଗରେ ଗଦା ଗଦା ଫିଟି ପଡ଼ିଅଛି
କେତେ ଆଉ ଖୋଜୁଥିବି ? ଖୋଜିବାର ଶେଷ ନାହିଁ,
ଆକାଶର ପାଦ ଶବ୍ଦ ଶୁଣୁ ଶୁଣୁ
କେତେବେଳେ କ୍ଲାନ୍ତ ଦେହେ ଘୁମାଇ ପଡ଼ିଛି ।।

ମଶା ଗୁଣୁ ଗୁଣୁ କରେ, ଅପେକ୍ଷାରେ
ଆକ୍ରମଣ କରିବାର ସୁବର୍ଣ୍ଣ ସୁଯୋଗ,
କାନ୍ଥରୁ ଖସି ପଡ଼ିଲା ଝିଟିପିଟି
ଚମକି ପଡ଼ିବା ମାତ୍ରେ ନିଦ ଭାଙ୍ଗିଗଲା
କେଉଁ ପାଦେ ପଡ଼ିଲା କି, ବାମେ ନା ଦକ୍ଷିଣେ ?
ଦିନସାରା କଟିଅଛି ଘୂରି ଘୂରି ଅକାରଣେ
ସ୍ୱପ୍ନ ସବୁ ପୂରା ମିଛ, ଦୂରର ଆଲୁଅ ପରି ନିଭିଯାଏ,
କିଏ ସେ ନ ଜାଣେ ?

ନିର୍ଜନତା, କେଉଁଠାରେ ତୋ ବେଶ ମୋହନ
ବିଶ୍ୱାସ ହୁଏ ନି କରି
ତୁ କି କେବେ ମୋହିଥିଲୁ ମୁନିର ନୟନ,
ତୁ ତ ନିଜେ ଅନ୍ଧ ହୋଇ ଯାଇଅଛୁ ଅକସ୍ମାତ୍
ହସୁ ହସୁ ଦିନେ
ବଉଳର ମଧୁ ସଙ୍ଗେ ଝରିଅଛି ରଙ୍ଗ ଓ ସୁରଭି
ଏକାନ୍ତ ଗୋପନେ ।।

ତଥାପି ପଡୁଚି ମନେ
ମୋତେ ଦିନେ ଏକା ଏକା ନଈକୂଳେ ଦେଖି
ମନ ଇଚ୍ଛା ଗେଲ କଲୁ, ଦୁଇହାତେ କୁଣ୍ଢାଇ ଧରିଲୁ
ହାତରେ ବଇଁଶୀ ଦେଲୁ

ମଥାରେ ମୟୂର ଚୂଳ, ଆଖିରେ ଗୁହାଁଣି
କହିଥିଲୁ,
ତୋ ଠାରୁ ସୁନ୍ଦର ଆଉ କିଏ ଅଛି ଗୋପପୁରେ
ମୋ କଥା ବିଶ୍ୱାସ କରି
ଏହିଠାରେ ଅପେକ୍ଷାରେ ଥାଅ ନୀଳମଣି ।।

ପ୍ରକୃତରେ ତୋର କଣ ଇଚ୍ଛା ଥିଲା, ବୁଡ଼ାଇ ମାରିବା ଲାଗି,
ନା, ନା କେମିତି କହିବି ତୋର ସବୁ ଦୁଷ୍ଟ ବୁଦ୍ଧି,
ଆଖି ପାଣି ଆଖିରେ ମରିଲା ମୋର
ଉଦାସୀନ ସୂର୍ଯ୍ୟ ଆଉ ତାରା
ସ୍ଥିର ହେଲେ ଧୀରେ ଧୀରେ,
କଣ ଅବା ତୋତେ ଅଗୋଚର ।

ଆଜି ଖାଲି ଗୁରିଆଡ଼ ଖାଁ ଖାଁ
ଖରାରେ ଶୁଖି ଗଲାଣି ଘାସ ପତ୍ର
ନିଛାଟିଆ ଝିଙ୍କାରୀର ଝିଁ ଝିଁ ଶବ୍ଦ ଛଡ଼ା କିଛି ଶୁଭେ ନାହିଁ
ପାହାଡ଼ ଭୁଷୁଡ଼ି ପଡ଼େ
ଏକମାତ୍ର ଆଶ୍ରା ମୋର କୁଡ଼ିଆଟି ଜଳିଯାଏ
ମୋ ଆଖି ସାମ୍ନାରେ ।
କେଉଁଠୁ ଆସିଲା ନିଆଁ ହୁତାଶନ
ଅଣଗ୍ରଶ ପବନ ସାଥୀରେ
ହାତ ଗୋଡ଼ ଚଳେ ନାହିଁ, ଆଖି ଭର୍ତ୍ତି ଲୁହ
ଠିଆ ହୋଇ ଦେଖୁଥାଏ, କେଡ଼େ ଅସହାୟ ।।

ଦିନ ସବୁ ଭାରବାହୀ ପଶୁପରି କେଉଁଆଡ଼େ ଗ୍ଲିଯାନ୍ତି
ଗୋଟି ଗୋଟି ହୋଇ
ଅଶୁଭ ଶକୁନ ମାନ ଅବଶେଷ ରହିଯାଏ ଆକାଶ ସୀମାରେ
ଭୟଙ୍କର କଳା ରାତି ସବୁ ରାସ୍ତା ଶୋଷିନିଏ
ଦୁଇ ହାତ ଖୋଲି
ଉଠିବାର ଶକ୍ତି ନାହିଁ ଆଉ ମୋର
ହାତ ଗୋଡ଼ ଭାଙ୍ଗି ଅଛି ଏଠି ଝୁଣ୍ଟି ପଡ଼ି ।।

## ।। ନାଚ ।।

ଆନନ୍ଦରେ ହସୁଛ ନା ବିଦ୍ରୂପ କରୁଛ ସତେ
ନାଚ ଦେଖି ମୋର
ମୁଁ ଖସୁଚି ପାହାଡ଼ ଶିଖ ଉପରୁ
ପଥର ଖଣ୍ଡଟେ ପରି
ହସୁ ହସୁ ତୁମେ ପୁଣି କେତେବେଳେ ଉଦାସ ଗମ୍ଭୀର ।।

ତୁମେ କଣ ତୃପ୍ତି ପାଅ ମୋ ନାଚରୁ ?
ପାଦ ଥରିଯାଏ ଏବେ ଅସମାନ ଭୂମିପରେ
ଧରିନିଅ ହାତ ମୋର
ଗଲି କ୍ଲାନ୍ତ ହୋଇ
ମୁଁ କି ଛୋଟ ପିଲାଟିଏ
ପ୍ରଲୋଭନେ ନାଚିବାକୁ କହି ମୋତେ
ରଖିଚ ଭୁଲାଇ ?

ସକଳ ସୁନ୍ଦର ହୋଇ ଠିଆ ହେଲି ପୃଥିବୀରେ
ଈର୍ଷୁକ ଲୋକଙ୍କ ଆଗେ ପରିହାସ ସହି
ହାତ ଗୋଡ଼ ଭାଙ୍ଗି ମୁହିଁ ନାଚୁଅଛି ସାରାଦିନ
କେତେ ଦୁଃଖ,
ସତେ ଅବା ବିକଳାଙ୍ଗ ହୋଇ ।'

## ।। ସେତୁ ।।

ମୁଁ ଏମିତି ଦେଖିନାହିଁ
ଅକସ୍ମାତ୍ ପବନର ଗତିରୋଧ ହେବା,
ପଛକୁ ମୁହଁ ବୁଲାଇ ଗୁହିଁ ଦେବାମାତ୍ରେ
ମୋ ଆଡ଼କୁ ବହି ଆସୁଥିବା
କଅଁଳା ବାଛୁରୀ ଭଳି ଉଦ୍ଦାମ ପବନ
ସେହିଠାରେ ଠିଆ ହୁଏ,
ଦେଖାଯାଏ କ୍ରମେ କ୍ରମେ ଉଦାସ କରୁଣ,
ତା ପରେ ସେ ଫେରିଯାଏ,
ଗତି ତାର କେତେ ବେଶି ଧୀର ଓ ମନ୍ଥର ।।

କେଉଁଠି ଛାଡ଼ି ଆସିଲି ମୋର ରାସ୍ତା,
ଈଶ୍ୱରଙ୍କ ଅନ୍ଧକାର,
କାଁ ଭାଁ ବାଦୁଡ଼ିର ଫଡ଼ ଫଡ଼ ଶବ୍ଦ
ଭୀତ ତ୍ରସ୍ତ କରିଦିଏ,
କେଉଁଠାରେ ମୁଁ ହୁଏତ ପଡ଼ିଯିବି, ଗୋଡ଼ ଛୋଟା ହେବ,
ସେ କିଏ ସେ ? ମୋର ଛାଇ ?
ମୋର ନିର୍ଲିପ୍ତ ଭାବ ଦେଖି ଦେଖି କଣ ଅବା ଭାବୁଥିବ,
ଅପେକ୍ଷାରେ ଠିଆ ହୋଇଯିବ ।
ନ ଚିହ୍ନିବା ଯନ୍ତ୍ରଣାରେ ଗଛର ସମସ୍ତ ପତ୍ର
ଗୋଟି ଗୋଟି ଖସି ପଡ଼ୁଥିବ ।।

ମୁଁ ଶୁଣି ପାରିଲି ନାହିଁ ସେମାନଙ୍କ ଡାକ ହାୟ,
ମନେପଡ଼େ ସେମାନଙ୍କ ସଙ୍ଗେ ମୋର ଆତ୍ମୀୟତା,
ମୋ ପାଇଁ କ୍ରମଶଃ ଗଢ଼ା ମୂର୍ତ୍ତି ପରି ଶ୍ରଦ୍ଧା ଓ ସମ୍ମାନ,

ପ୍ରଥମେ ପ୍ରଥମେ କିଛି ଆକର୍ଷଣ ଅନୁଭବ କରିଲିନି
କିନ୍ତୁ ଶେଷବେଳେ
ହଠାତ୍ ଶୁଣିବା ଏକ ସଙ୍ଗୀତର ଶେଷ ପଦ ଭଳି
ପ୍ରାଣସ୍ପର୍ଶୀ, ମଧୁରିଁ, କୋମଳ
କିଏ ଅବା ଜାଣିଥିଲା
ସେ ଡାକର ଏତେ ଶକ୍ତି, ମୋହ ଦୁର୍ନିବାର ।।

ମୁଁ ଆଜି ହଜି ଯାଇଛି
କେଉଁଠାରେ ମୋର ସତ୍ତା ନାହିଁ,
ମୋ ଛିଣ୍ଡା ପୋଷାକ ସବୁ ନିଆଁରେ ଜଳି ଯାଇଛି,
ମୁଁ ଏତେ ନିଷ୍ଠୁର ହେଲି ସେତେବେଳେ
ସାମାନ୍ୟ ଥରିଲି ନାହିଁ ଅନୁଶୋଚନାରେ,
ମୁଁ ଆଉ ଭାଷଣ କେବେ ଦେବି ନାହିଁ,
କେବଳ ମୁଁ ଲୁଚିଛପି ରହିଥିବି ଶ୍ରୋତାଙ୍କ ଭିତରେ
ମୋତେ ତେବେ ଖୋଜିବାର ଅର୍ଥ କଣ ?
ଅର୍ଥ କିଛି ନାହିଁ ।।

ମୁଁ ଯଦି ସମ୍ରାଟ୍ ହୋଇ ପାରିଥାନ୍ତି
ନିଷ୍କଣ୍ଟକ ସିଂହାସନ ଭୋଗ କରୁଥାନ୍ତି
ହତ୍ୟାକରି ଯେତେ ମୋର ପ୍ରତିଦ୍ୱନ୍ଦ୍ୱୀ ଆଜି ନିର୍ବିକାରେ,
ଏବଂ ମୋର ବର୍ତ୍ତମାନ ରହିଥାନ୍ତା ସ୍ଥିର, ଅଚଞ୍ଚଳ
ସେ କେତୋଟି ମୁହୂର୍ତ୍ତର
ରାସ୍ତା ପାରି ହେବାର ସୂଚନା
ମିଳିବା ପରେ ହଠାତ୍
ମୋର ସବୁ ଧୀରେ ଧୀରେ ମନେ ପଡ଼ୁଥାନ୍ତା
ଗାଁ, ନଈ, ବିଲ, ମାଳ, ବୋହୂଚୋରୀ ଖେଳ ।।

ପଥିକର ପ୍ରତିଜ୍ଞା ନିଷ୍ଫଳ ହୁଏ,
କେତେବେଳେ ସୂର୍ଯ୍ୟୋଦୟ କେବେ ବା ସୂର୍ଯ୍ୟାସ୍ତ

ସବୁଦିନେ ପୁଣି ନୂଆ ଉତ୍ତେଜନା
କେତେବାଟ ଆଉ ତେବେ ପହଞ୍ଚିବା ସ୍ଥାନ,
ନୂଆ ରାସ୍ତା ସୃଷ୍ଟି ହୁଏ
ଏବଂ ସୃଷ୍ଟି ହୋଇ ଚାଲିଥାଏ,
ପୁଣି ହଜିଯାଉଥାଏ ସମାନ ଭାବରେ
ମୋ ଚଷମା କାଚ କ୍ରମେ ଧୂଆଁଳିଆ ହୋଇଯାଏ,
ଭୟଲାଗେ ଚାହିଁବାକୁ ଦୂରେ
ହଜିଯାଏ କାନ ମୋର, ଆଖି ମୋର
ସଂଖ୍ୟାହୀନ ଶବ୍ଦଙ୍କର ଅନ୍ଧାର ଭିତରେ ।।

ପାହାଡ଼ରୁ ଝରଣା ଗଡ଼ି ଆସିବା
ପାହାଡ଼ରୁ ପଥର ଗଡ଼ି ଆସିବା
କଣ ସବୁ ଏକା କଥା ?
ଦୁଇଟିର କ୍ଳାନ୍ତିହୀନ ଶବ୍ଦ କଣ ଏକା ଭଳି ଶୁଭେ ?
କି ପାର୍ଥକ୍ୟ ଏ ଭିତରେ
ମୁଁ ତ କରିପାରେ ନାହିଁ କେବେ ଅନୁମାନ,
ମୋର ବା ବିଶ୍ରାମ କାହିଁ ?
ମୁଁ ତ ପ୍ରତି ମୁହୂର୍ତ୍ତରେ
ଅରଣ୍ୟର ଗୋଟିଏ ସ୍ଥାନରୁ ଯାଇ
ଅନ୍ୟ ସ୍ଥାନେ ଲୁଚେ ।।

ପୁରୁଣା ଭୁଲକୁ ପୁଣି ସଜାଡିବା ଲାଗି ଯଦି
ମୁଁ ଏଠାରେ ନୂଆ କିଛି ହରାଇ ବସିବି,
ପୁନଶ୍ଚ ପୁରୁଣା କଷ୍ଟ ଶ୍ୱାସ ରୁଦ୍ଧ କରିଦେବ,
ଯେତେ ସବୁ ଅନୁଭବ
ଛିଣ୍ଡାଇ ଆସିବା ବେଳେ ଏକ ଏକ ସ୍ନେହର ବନ୍ଧନ,
ବହୁଦୂରୁ ରେଲଗାଡ଼ି ଦୃଶ୍ୟ ଦିନେ
ମନେ ହେଉଥିଲା ମୋର ଖୁବ୍ ପ୍ରାଣ ପୂର୍ଣ୍ଣ ।।

ସେ କେତେ ନିଷ୍ଠୁର ସତେ
ଯିଏ ମୋତେ ମାଆଠୁ ବିଚ୍ଛିନ୍ନ କଲା
ମୋ ନାଭିରେ ଲାଗିଥିବା ନାଡ଼ିକୁ ଛିଣ୍ଡାଉ୍
କ୍ରମେ ସବୁ ଦେହସୁହା ହୋଇଯାଏ
ଝପି ଗପି ସମୟକୁ କରିବାରେ ଯେତେ ପ୍ରତାରଣା,
ହଠାତ୍ ଫାଙ୍କ ପାଇଲେ
କିଏ ଆସି ଧକ୍‌କା ଦିଏ,
ଅନେକ ଦୂରରେ ପୂରା ଭାଙ୍ଗି ପଡ଼ିଥିବା ସେଇ
ପୁରାତନ ସେତୁକୁ ଦେଖାଏ,
ଫେରିବାର ପଥ ନାହିଁ,
ମୁଁ ହୋଇଚି ଏଠି ବାଟବଣା,
ମୁଁ ତ ତାକୁ ଭାଙ୍ଗିଥିଲି ନିଜ ହାତେ,
ଆମ୍ହରା ନୂତନ ଐଶ୍ୱର୍ଯ୍ୟେ,
ତଥାପି ତଥାପି ପୁଣି ତଥାପି ଯନ୍ତ୍ରଣା ।।

———